ବୌଦ୍ଧ ଜାତକମାଳା—୪ର୍ଥ

# ଜାତକ କାହାଣୀ

## ଚତୁର୍ଥଖଣ୍ଡ

ଅନୁବାଦକ :

ଅଧ୍ୟାପକ **ଶ୍ରୀଧର ଦାସ**


**ଗ୍ରନ୍ଥ ମନ୍ଦିର**

କଟକ-୨ : ବ୍ରହ୍ମପୁର-୧

[ This book has been printed in paper made availabe by the Govt. of India at concessional rate. ]

ପ୍ରକାଶକ :
ଅଭିରାମ ମହାପାତ୍ର
**ଗ୍ରନ୍ଥ ମନ୍ଦିର**
କଟକ-୨ : ବ୍ରହ୍ମପୁର-୧

ମୁଦ୍ରଣ :
ଜୟରାମ ମହାପାତ୍ର
**ଗ୍ରନ୍ଥ ପ୍ରକାଶିନୀ**
କଟକ-୧

ପ୍ରଥମ ମୁଦ୍ରଣ :
ସେପ୍ଟେମ୍ବର, ୧୯୭୨
ଦ୍ୱିତୀୟ ମୁଦ୍ରଣ :
ଫେବୃଆରୀ, ୧୯୭୭

ମୂଲ୍ୟ : ଟ ୨-୭୫

# ସୂଚୀ

---

# କଲ୍ୟମୁଷ୍ଟି ଜାତକ

ଏକ ସମୟରେ ବ୍ରହ୍ମଦତ୍ତ ନାମରେ ଜଣେ ପରାକ୍ରାନ୍ତ ରାଜା ବାରାଣସୀରେ ରାଜତ୍ୱ କରୁଥିଲେ । ବୋଧିସତ୍ତ୍ୱ ତାଙ୍କର ଜଣେ ଅତି ବିଶ୍ୱାସୀ ମନ୍ତ୍ରୀ ଥିଲେ । ସେହି ମନ୍ତ୍ରୀ ତାଙ୍କୁ ସମସ୍ତ ରାଜକାର୍ଯ୍ୟରେ ଉପଦେଶ ଦେଉଥିଲେ ଓ ରାଜା ତାଙ୍କ ପରାମର୍ଶ ମାନି ଚଳୁଥିଲେ ।

ଥରେ ରାଜ୍ୟର ସୀମାନ୍ତ ପ୍ରଦେଶରେ ଦଳେ ଲୋକ ରାଜାଙ୍କର ବିରୋଧୀ ହୋଇଉଠିଲେ । ସୀମାନ୍ତରେ ଅବସ୍ଥିତ ସୈନ୍ୟମାନେ ରାଜାଙ୍କ ନିକଟକୁ ଏହି ସମ୍ବାଦ ପଠାଇଲେ । ରାଜା ଏ ସମ୍ବାଦ ପାଇଲାମାତ୍ରେ ବିଦ୍ରୋହୀମାନଙ୍କୁ ଦମନ କରିବା ପାଇଁ ସୈନ୍ୟସାମନ୍ତମାନଙ୍କୁ ନେଇ ବାହାରି ପଡ଼ିଲେ ।

ସେତେବେଳକୁ ଘୋର ବର୍ଷାକାଳ । କିନ୍ତୁ ରାଜାଙ୍କ ଆଦେଶରେ ଏକ ପ୍ରକାଣ୍ଡ ସୈନ୍ୟଦଳ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ବାହାରିଲେ । ରାଜଧାନୀର ଅଦୂରବର୍ତ୍ତୀ ଏକ ଉଦ୍ୟାନରେ ସୈନ୍ୟମାନେ ସମ୍ମିଳିତ ହେଲେ । ସୈନ୍ୟ ଓ ହସ୍ତୀ, ଅଶ୍ୱ ପ୍ରଭୃତିଙ୍କ ପାଇଁ ଭୋଜନର ବ୍ୟବସ୍ଥା ହେଲା । ବୋଧିସତ୍ତ୍ୱ ରାଜାଙ୍କ ପାଖେ ପାଖେ ରହିଥାନ୍ତି ।

ଘୋଡ଼ାମାନଙ୍କ ପାଇଁ ବୁଟ ସିଝା ହୋଇ ଗୋଟିଏ ବଡ଼ ପାତ୍ରରେ ରଖାଯାଇଥିଲା । ଉଦ୍ୟାନର ବୃକ୍ଷମାନଙ୍କରେ କେତେକ ବାନର ବାସ କରୁଥିଲେ । ବୁଟ ଦେଖି ଗୋଟିଏ ବାନର ଗଛରୁ ଓହ୍ଲାଇ ଆସି କିଛି ବୁଟ ପାଟିରେ ଭର୍ତ୍ତିକରିଦେଲା ଓ ଦୁଇହାତରେ ଦୁଇମୁଠା ବୁଟ ଧରି ଗଛ ଉପରକୁ ପୁଣି ଚଢ଼ିଗଲା । ଗୋଟିଏ ଡାଳ ଉପରେ ବସି ସେ ବୁଟ ଖାଇବାକୁ ଲାଗିଲା । ଖାଉ ଖାଉ ଗୋଟିଏ ବୁଟ ତା ହାତରୁ ଖସି ତଳେ ପଡ଼ିଗଲା । ସେ ବୁଟଟିକୁ ନେବା ପାଇଁ ତଳକୁ ଡେଇଁପଡ଼ିଲା ବେଳକୁ ତା ହାତରେ ଥିବା ସବୁଯାକ ବୁଟ ତଳେ ପଡ଼ିଗଲା । ସବୁ ବୁଟ ହରାଇ ସେ ଅତି ଦୁଃଖରେ ମନ ମାରି ପୁଣି ଗଛ ଉପରେ ବସିରହିଲା ।

ରାଜା ମାଙ୍କଡ଼ଟିର ଏହି କାର୍ଯ୍ୟକୁ ଲକ୍ଷ୍ୟ କରୁଥିଲେ । ସେ ବୋଧିସତ୍ତ୍ୱଙ୍କୁ ପଚାରିଲେ, "ବନ୍ଧୁ, ଏ ମାଙ୍କଡ଼ ଯାହା କଲା ଦେଖିଲ । ଏଥିରୁ ତୁମର କଅଣ ମନେହୁଏ ?" ବୋଧିସତ୍ତ୍ୱ ଉତ୍ତର କଲେ, "ମହାରାଜ, ନିର୍ବୋଧ ଲୋକେ ଏହି ବାନର ପରି କାର୍ଯ୍ୟ କରିଥାନ୍ତି । ସେମାନେ ପଇସାଏ ପାଇବା ସକାଶେ ଚେଷ୍ଟା କରି ଠଙ୍କାଏ ହରାଇଥାନ୍ତି । ଆମେ ମଧ୍ୟ ଏହି ବାନର ଭଳି ହେବାକୁ ଯାଉଛୁ । ଆମକୁ ଲୋଭ ଗ୍ରାସିଛି । ତାହା ନୋହିଥିଲେ କି ଆମେ ଏ ବର୍ଷାଋତୁରେ ଯୁଦ୍ଧ କରିବାକୁ ବାହାରିଥାଆନ୍ତେ ?"

ଏହା ଶୁଣି ରାଜା ସୈନ୍ୟମାନଙ୍କ ସହିତ ପୁଣି ନିଜ ରାଜଧାନୀକୁ ଫେରିଗଲେ ।

ଏଣେ ବିଦ୍ରୋହୀମାନେ ଶୁଣି ପାରିଲେ ଯେ ସ୍ୱୟଂ ରାଜା ପ୍ରକାଣ୍ଡ ସୈନ୍ୟଦଳ ସହିତ ସେମାନଙ୍କୁ ଦମନ କରିବା ପାଇଁ ଆସୁଛନ୍ତି । ତେଣୁ ସେମାନେ ଭୟରେ ସୀମାନ୍ତ ପ୍ରଦେଶ ଛାଡ଼ି ପଳାଇଗଲେ ।

ଏହିପରି ବିନା ଯୁଦ୍ଧରେ ବ୍ରହ୍ମଦତ୍ତ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା କରି ପାରିଥିଲେ । ***

## ସଞ୍ଜୀବ ଜାତକ

କୌଣସି ପୂର୍ବଜନ୍ମରେ ବୋଧିସତ୍ତ୍ୱ ବାରାଣସୀର ଏକ ଧନୀ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଉପଯୁକ୍ତ ବୟସ ହେବାରୁ ସେ ପିତାଙ୍କ ଦ୍ୱାରା ତକ୍ଷଶିଳାକୁ ଶିକ୍ଷା ନିମନ୍ତେ ପ୍ରେରିତ ହେଲେ । ସେଠାରେ ସକଳ ଶାସ୍ତ୍ର ଅଧ୍ୟୟନ କରି ପାଣ୍ଡିତ୍ୟ ଅର୍ଜନ କଲାପରେ ସେ ବାରାଣସୀକୁ ଫେରିଆସିଲେ ଓ ନିଜେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରି ସେଥିରେ ଅଧ୍ୟାପନା କରିବାକୁ ଲାଗିଲେ । ଅଧ୍ୟାପକଭାବରେ ତାଙ୍କର ଯଶ ଭାରତ

ଅତକ୍ରମ କରି ବିଦେଶରେ ମଧ୍ୟ ବ୍ୟାପିଯାଇଥିଲା । ପାଞ୍ଚଶହ ବ୍ରାହ୍ମଣ ବାଳକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ତାଙ୍କଠାରୁ ନାନା ବିଷୟ ଶିକ୍ଷା କରୁଥିଲେ ।

ଏହି ଶିଷ୍ୟମାନଙ୍କ ମଧ୍ୟରୁ ଜଣଙ୍କର ନାମ ଥିଲା ସଞ୍ଜୀବ । ଏହାର ଆଚରଣରେ ବୋଧିସତ୍ତ୍ୱ ବିଶେଷ ପ୍ରୀତ ହୋଇ ତାକୁ ଅନ୍ୟାନ୍ୟ ବିଦ୍ୟା ଛଡ଼ା ଗୋଟିଏ ମନ୍ତ୍ର ଶିକ୍ଷା ଦେଇଥିଲେ । ଉକ୍ତ ମନ୍ତ୍ରଦ୍ୱାରା କୌଣସି ମୃତ ପ୍ରାଣୀକୁ ପୁନର୍ଜୀବନ ଦିଆଯାଇ ପାରୁଥିଲା । କିନ୍ତୁ କି ଉପାୟରେ ଏହି ମନ୍ତ୍ରର ପ୍ରତିକାର କରାଯାଇ ପାରିବ ତାହା ସଞ୍ଜୀବ ଶିଖି ନ ଥିଲା । ତେଣୁ ମନ୍ତ୍ରଦ୍ୱାରା ମୃତ ପ୍ରାଣୀକୁ ବଞ୍ଚାଇବାର ଶକ୍ତି ତାହାଠାରେ ଥିଲା; କିନ୍ତୁ ମନ୍ତ୍ରଦ୍ୱାରା ଜୀବନପ୍ରାପ୍ତ ପ୍ରାଣୀର ଜୀବନ ହରଣ କରିନେବାର ଶକ୍ତି ତାହାଠାରେ ନ ଥିଲା ।

ବୋଧିସତ୍ତ୍ୱ ସଞ୍ଜୀବ ବ୍ୟତୀତ ଅନ୍ୟ କୌଣସି ଛାତ୍ରକୁ ଏହି ମନ୍ତ୍ର ଶିକ୍ଷା ଦେଇ ନ ଥିଲେ । ତେଣୁ ସଞ୍ଜୀବ ମନେ ମନେ ଗର୍ବ ଅନୁଭବ କରୁଥିଲା । ଦିନେ ସେ ଅନ୍ୟାନ୍ୟ ଛାତ୍ରଙ୍କ ସହିତ କାଠ ସଂଗ୍ରହ କରିବା ଉଦ୍ଦେଶ୍ୟରେ ବନକୁ ଯାଇଥିଲା । ଦୈବାତ୍ ବନ ମଧ୍ୟରେ ଗୋଟିଏ ବ୍ୟାଘ୍ର ମୃତ ହୋଇ ପଡ଼ିଥିଲା । ତାହାକୁ ଦେଖିବାମାତ୍ରେ ସଞ୍ଜୀବର ଅହମିକା ଜାଗିଉଠିଲା । ସେ ତାର ସଙ୍ଗୀମାନଙ୍କୁ କହିଲା, "ଦେଖ, ମୁଁ ମନ୍ତ୍ରବଳରେ ଏ ମଲା ବାଘକୁ ଜୀବନ ଦେଇ ପାରିବି ।" ସଙ୍ଗୀମାନେ ଏ କଥାରେ ସନ୍ଦେହ ପ୍ରକାଶ କରି କହିଲେ, "ନା, ତୁମେ ତା କରିପାରିବା ଅସମ୍ଭବ । ବୃଥା ଗର୍ବ କରୁଛ କାହିଁକି ?" ସଞ୍ଜୀବ ଉତ୍ତର କଲା, "ତୁମେମାନେ ଟିକିଏ ଅପେକ୍ଷା କର । ମୁଁ ଏହାକୁ ଜୀବନ୍ୟାସ ଦେଇ ମୋ ମନ୍ତ୍ରର ଶକ୍ତି ପ୍ରମାଣ କରିଦେବି ।" ଅନ୍ୟମାନେ କହିଲେ "ଅଚ୍ଛା, ତୁମେ ଇଚ୍ଛା କଲେ ମଲା ବାଘକୁ ପ୍ରାଣ ଦେଇ ପାଣ୍ଡିତ୍ୟ ପ୍ରକାଶ କରିପାର; କିନ୍ତୁ ଆମେମାନେ ଗଛ ଉପରକୁ ଉଠିଯିବା-ଯାଏ ଅପେକ୍ଷା କର ।" ଏହା କହି ସେମାନେ ଗଛ ଉପରେ ଚଢ଼ି ଡାଳରେ ଆଶ୍ରୟ ନେଲେ ।

ସଞ୍ଜୀବ ମନ୍ତ୍ରପାଠ କରି କିଛି ଧୂଳି ନେଇ ମଲା ବାଘ ଉପରକୁ ଫିଙ୍ଗିଦେଲା । ସେ ତତ୍‌କ୍ଷଣାତ୍ ଜୀବନ ପାଇ ଉଠିଲା ଓ ଭୀଷଣ ଗର୍ଜନ କରି

ଆଗରେ ଥିବା ସଞ୍ଜୀବଙ୍କୁ ମାଡ଼ିବସିଲା । ମୁହୂର୍ତ୍ତିକ ମଧ୍ୟରେ ବ୍ୟାଘ୍ର ସଞ୍ଜୀବର ପ୍ରାଣନାଶ କଲା । କିନ୍ତୁ ଏହା ପରେ ପରେ ବ୍ୟାଘ୍ର ପୁନର୍ବାର ମରିପଡ଼ିଲା ।

ଶିଷ୍ୟମାନେ ଗଛଡାଳରୁ ଓହ୍ଲାଇ ଆସି ସଞ୍ଜୀବର ମୃତ୍ୟୁରେ ଦୁଃଖ ପ୍ରକାଶ କଲେ । ସେମାନେ କାଷ୍ଠ ସଂଗ୍ରହ କରି ବିଦ୍ୟାଳୟକୁ ଆସି ସଞ୍ଜୀବ ବୃତ୍ତାନ୍ତ ଗୁରୁଙ୍କ ନିକଟରେ ଜଣାଇଲେ । ତହୁଁ ବୋଧିସତ୍ତ୍ୱ ଶିଷ୍ୟମାନଙ୍କୁ ଉପଦେଶ ଦେଇ କହିଲେ, "ଉପଯୁକ୍ତ ପାତ୍ର ଦେଖି ଦାନ ଦେବା ଉଚିତ; ଉପଯୁକ୍ତ ବ୍ୟକ୍ତିକୁ ସମ୍ମାନ ଦେଖାଇବା ଉଚିତ । ଅପାତ୍ରରେ ଦାନ ବା ସମ୍ମାନ ପ୍ରଦର୍ଶନ କରିବାର ଫଳ ବିଷମୟ ହୋଇଥାଏ । ସଞ୍ଜୀବ ହେଉଛି ଏହାର ପ୍ରମାଣ । ସେ ଦୁଷ୍ଟ ବ୍ୟାଘ୍ରକୁ ଜୀବନ ଦାନ କରିବାରୁ ଫଳରେ ନିଜର ପ୍ରାଣ ହରାଇଲା । ଦୁଷ୍ଟକୁ ଦୟା କଲେ ସେ ଦୟା ବିଫଳ ହୁଏ; ବରଂ ତାହାଦ୍ୱାରା ନିଜର ଅନିଷ୍ଟ ସାଧିତ ହୋଇଥାଏ ।" ***

## କାକ ଜାତକ

କୌଣସି ଜନ୍ମରେ ବୋଧିସତ୍ତ୍ୱ ଏକ ସମୁଦ୍ରଦେବତାରୂପେ ଜନ୍ମିଥିଲେ । ଦିନେ ଗୋଟିଏ କାକ ତାହାର ପତ୍ନୀ ସହିତ ସମୁଦ୍ରକୂଳରେ ଆହାର ଅନ୍ୱେଷଣ କରୁଥିଲା । ଗୋଟିଏ ସ୍ଥାନରେ କେତେକ ଲୋକ ନାଗପୂଜା କରି ଯାଇଥିଲେ । ଦୁଧ, ଅରୁଆଚାଉଳ, ମାଂସ, ମଦ୍ୟ ପ୍ରଭୃତି ପୂଜାଦ୍ରବ୍ୟ ସେଠାରେ ପଡ଼ିଥିଲା । କାକ ସେଠାକୁ ଆସି କାକୀ ସହିତ ପ୍ରଚୁର ପରିମାଣରେ ସେହି ସବୁ ପୂଜାଦ୍ରବ୍ୟ ଖାଇଲା । ଦୁହେଁ କାକ ଯଥେଷ୍ଟ ମଦ୍ୟପାନ କରିବାରୁ ସେମାନେ ନିଶାରେ ଭୋଳ ହୋଇ ସମୁଦ୍ରରେ ଜଳକ୍ରୀଡ଼ା କରିବାକୁ ଲାଗିଲେ । ଅଳ୍ପ ସମୟ ପରେ ଗୋଟିଏ ପ୍ରକାଣ୍ଡ ଲହଡ଼ି ଆସି କାକୀକୁ ସମୁଦ୍ରଗର୍ଭକୁ ଟାଣିନେଲା । ଏକ ବୃହତ୍ ମତ୍ସ୍ୟ ତାହାକୁ ଧରି ଗିଳିଦେଲା ।

କାକ ପତ୍ନୀକୁ ହରାଇ ବିଳାପ କରିବାକୁ ଲଗିଲ, "ଏ ଦୁଷ୍ଟ ସମୁଦ୍ର ମୋର ପତ୍ନୀକୁ ନେଇଗଲା।" ତାହାର ବିଳାପ ଶୁଣି ବହୁସଂଖ୍ୟକ କାକ ସମୁଦ୍ରତୀରକୁ ଆସି ଘଟଣା କଅଣ ବୋଲି ପଚାରିଲେ। କପରି ତାହାର ପତ୍ନୀ ସମୁଦ୍ରଗର୍ଭରେ ବିନଷ୍ଟ ହୋଇଥିଲା, ତାହା କାକ ବର୍ଣ୍ଣନା କଲା। ତହୁଁ ସବୁ କାକ ମିଳି ବିଳାପ କରି ସମୁଦ୍ରବେଳାକୁ କମ୍ପାଇ ଦେଲେ।

ହଠାତ୍ ସେମାନଙ୍କ ମନରେ ଏକ ଅଭିନବ ଧାରଣା ଜନ୍ମିଲା। ସେମାନେ ଭାବିଲେ—ଆମର ବଳ ସମୁଦ୍ରଠାରୁ ଊଣା ନୁହେଁ । ଆମେ ସମସ୍ତେ ମିଳି ସମୁଦ୍ରକୁ ଶୁଖାଇ ଦେଇ କାକୀକୁ ଉଦ୍ଧାର କରିବା। ଏହାପରେ ସ୍ଥିର କରି ସେମାନେ ନିଜ ନିଜ ଥଣ୍ଟରେ ସମୁଦ୍ରରୁ ପାଣିଆଣି କୂଳ ବାଲିରେ ଫିଙ୍ଗିବାକୁ ଲଗିଲେ। କିଛି ସମୟ ପରେ ସମୁଦ୍ରର ଲୁଣିଆ ପାଣିରେ ସେମାନଙ୍କର ଗଳା ପୋଡ଼ିବାକୁ ଲଗିଲା; ଆଖି ନାଲି ହୋଇଗଲା। କ୍ଳାନ୍ତିରେ ଦେହ ଅବଶ ହୋଇଆସିଲା । ଏଣେ ସମୁଦ୍ର ଲବମାତ୍ର ଶୁଖିଥିବାର ଦେଖାଗଲା ନାହିଁ। ତହୁଁ କେତେକ କାକ କହିଲେ, "ଏ ଉପାୟରେ ସମୁଦ୍ରକୁ ଶୁଖାଇବାର ଚେଷ୍ଟା ବୃଥା; ଆମେ ଗୋଟିଏ ଜାଗାରୁ ଯେତିକ ପାଣି ସମୁଦ୍ରରୁ ଆଣୁଛୁ, ମୁହୂର୍ତ୍ତକ ଭିତରେ ସେତିକ ପାଣି ସେଠାରେ ପଶିଯାଉଛି। ଆମର ମୁହଁ ଲୁଣିପାଣିରେ ଶୁଖିଗଲଣି, ଗଳା ଫୁଲିଗଲଣି। ଆଉ ସମୁଦ୍ରକୁ ଶୁଖାଇ ପାରିବା ନାହିଁ।"

ତହୁଁ କାକମାନେ କାକୀର ଗୁଣ ବାଖାଣିବାକୁ ଲଗିଲେ। "ଆହା, ତାର କି ସୁନ୍ଦର ରୂପ ! ତାର ଥଣ୍ଟ ଓ ତାର ଆଖି ଥରେ ଦେଖିଲେ ଭୁଲି ହେବ ନାହିଁ। ତାର ବର୍ଣ୍ଣ କି ଚମତ୍କାର ! ତାର ମଧୁର ସ୍ୱର ଶୁଣି କୋକିଳମାନେ ଲାଜରେ ରାବନ୍ତି ନାହିଁ। ତାର ଏଇସବୁ ଗୁଣ ଦେଖି ସମୁଦ୍ର ଲୋଭରେ ପଡ଼ି ତାକୁ ନେଇଗଲା। ହାୟ ! ତାକୁ ହରାଇ ଆମେ କପରି ଜୀବନ ଧରି ରହିବୁ ?"

ବୋଧିସତ୍ତ୍ୱ କାକମାନଙ୍କର ସମୁଦ୍ରକୁ ଶୁଖାଇଦେବାର ବୃଥା ଚେଷ୍ଟା ଦେଖି ଓ ସେମାନଙ୍କର ଏପ୍ରକାର ବିଳାପ ଶୁଣି ଦେଖିଲେ ଯେ ସେମାନେ

ଅନ୍ତରେ ନିଜର ସର୍ବନାଶର କାରଣ ହେବେ । ତେଣୁ ସେମାନଙ୍କ ଜୀବନ ରକ୍ଷା କରିବା ଉଦ୍ଦେଶ୍ୟରେ ସେ ଏକ ପ୍ରକାଣ୍ଡ ଦୈତ୍ୟରୂପରେ ସେମାନଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି କାକମାନେ ବିଳାପ ବନ୍ଦ କରି ଭୟରେ ଏଣେତେଣେ ପଳାଇଗଲେ ।

ଏପରି ନିର୍ବୋଧ କାକମାନଙ୍କର ଜୀବନ ରକ୍ଷାପାଇଲା । ***

## ବିରୋଚନ ଜାତକ

ଅତି ପ୍ରାଚୀନ କାଳରେ ଏକଦା ବୋଧିସତ୍ତ୍ୱ ଗୋଟିଏ ସିଂହରୂପେ ଜନ୍ମିଥିଲେ । ସେ ହିମାଳୟର ସୁବର୍ଣ୍ଣ-ଗହ୍ୱରରେ ବାସ କରୁଥିଲେ । ଦିନେ ସେ ଗହ୍ୱରରୁ ବାହାରି ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ସବୁ ଦିଗକୁ ଉତ୍ତମରୂପେ ନିରୀକ୍ଷଣ-ପୂର୍ବକ ଭୀଷଣ ଗର୍ଜନ କରି ଖାଦ୍ୟ ଅନ୍ୱେଷଣରେ ବାହାରିଲେ । କିଛି ସମୟ ପରେ ଗୋଟିଏ ମହିଷ ବଧ କରି ତାହାର ମାଂସ ଭୋଜନ କଲେ ଓ ଗୋଟିଏ ନିର୍ଝରିଣୀର ନିର୍ମଳ ଜଳପାନଦ୍ୱାରା ତୃଷ୍ଣା ନିବାରଣ କଲେ । ତତ୍ପରେ ସେ ନିଜର ଗହ୍ୱର ଆଡ଼କୁ ଯିବାକୁ ବାହାରିଲେ । ଏହି ସମୟରେ ଗୋଟିଏ ଶୃଗାଳ କ୍ଷୁଧାର୍ତ୍ତ ହୋଇ ତାଙ୍କର ବିପରୀତ ଦିଗରୁ ଆସୁଥିଲା । ସେ ଦେଖିଲା, ସିଂହଠାରୁ ରକ୍ଷା ପାଇବାର ଉପାୟ ନାହିଁ । ତେଣୁ ସେ ହଠାତ୍ ସିଂହର ପାଦ ତଳେ ପଡ଼ିଯାଇ କହିଲା, "ପ୍ରଭୁ, ମୁଁ ଆପଣଙ୍କୁ ଖୋଜି ଖୋଜି ଯାଉଥିଲି, ଆପଣଙ୍କ ସେବା କରି ଆପଣଙ୍କ ଉଚ୍ଛିଷ୍ଟ ଖାଇ ଜୀବନ କଟାଇଦେବା ମୋର ଇଚ୍ଛା । ଭାଗ୍ୟକୁ ଆପଣଙ୍କର ସାକ୍ଷାତ ମିଳିଗଲା । ଶୃଗାଳର ଏହି ତୋଷାମଦିଆ କଥାରେ ସନ୍ତୁଷ୍ଟ ହୋଇ ବୋଧିସତ୍ତ୍ୱ କହିଲେ, "ଆଚ୍ଛା, ତାହା ହିଁ ହେଉ । ତୁ ମୋର ଭୃତ୍ୟ ହୋଇ ରହିବୁ ଓ ମୋର ଖାଦ୍ୟରୁ କିଛି ତୋତେ ଖାଇବାକୁ ଦିଆଯିବ ।"

ଦୁହେଁ ଏକସଙ୍ଗରେ ଯାଇ ସିଂହର ଗହ୍ୱରରେ ଉପସ୍ଥିତ ହେଲେ । ସିଂହ ପ୍ରତିଦିନ ଯାହା ମାରିଆଣନ୍ତି ସେଥିରୁ କିଛି ଶୃଗାଳକୁ ଦିଅନ୍ତି । ତାହାକୁ ଖାଇ ଶୃଗାଳ ଦିନକୁ ଦିନ ବଳିଷ୍ଠ ଓ ସ୍ଥୂଳ ହେବାକୁ ଲାଗିଲା ।

ଦିନେ ସିଂହ ଶୃଗାଳକୁ କହିଲେ, "ତୁ ପର୍ବତ ଶିଖରକୁ ଯାଇ ଚାରିଆଡ଼କୁ ଭଲକରି ଦେଖିବୁ । ନିମ୍ନଭାଗରେ କୌଣସି ଠାରେ ହାତୀ ଘୋଡ଼ା ମଇଁଷି ବା ହରିଣ ପ୍ରଭୃତି କୌଣସି ଜୀବ ଥିବାର ଦେଖିଲେ ମୋତେ କହିବୁ —'ପ୍ରଭୁ, ବିଜେ କରନ୍ତୁ ।' ତାହାହେଲେ ମୁଁ ସେଥିରୁ ଗୋଟିଏ ବଧ କରି ନେଇ ଆସିବି ଓ ଦୁହେଁ ତାକୁ ଆନନ୍ଦରେ ଖାଇବା ।"

ସେହି ଦିନଠାରୁ ଶୃଗାଳ ପ୍ରତିଦିନ ପର୍ବତ ଉପରକୁ ଯାଇ ଚାରିଆଡ଼କୁ ଚାହେଁ । ଭଲ ଆହାରଯୋଗ୍ୟ ଜୀବ ଦେଖିଲେ ସେ ସିଂହ ପାଖକୁ ଯାଇ ପାଦତଳେ ପଡ଼ି କହେ, "ପ୍ରଭୁ, ବିଜେ କରନ୍ତୁ ।" ସିଂହ ତତ୍‌କ୍ଷଣାତ୍ ଉଠି ଶୃଗାଳଦ୍ୱାରା ନିର୍ଦ୍ଦିଷ୍ଟ ପଥରେ ଯାଇ ଜୀବଟିକୁ ବଧ କରୁଥିଲେ ଓ ଶୃଗାଳ ସହିତ ନିଜେ ତାର ମାଂସ ଭକ୍ଷଣ କରୁଥିଲେ । ତତ୍ପରେ ଦୁହେଁ ଗହ୍ୱରରେ ଏକତ୍ର ଶୟନ କରୁଥିଲେ ।

ଏହିପରି କିଛିକାଳ ଅନ୍ତ ହେବାରୁ ଶୃଗାଳ ଉତ୍କୃଷ୍ଟ ମାଂସ ଖାଇ ବଳବାନ୍ ଓ ସ୍ଥୂଳ ହୋଇଗଲା । ତହୁଁ ସେ ମନେ ମନେ ଭାବିଲା, "ମୁଁ ଏ ସିଂହଠାରୁ କେଉଁ ଗୁଣରେ ଊଣା ଯେ ମୁଁ ତାର ଚାକର ହୋଇ ତା ଉପରେ ନିର୍ଭର କରି ରହିଥିବି । ତାର ଯେପରି ଚାରିଟା ପାଦ ଅଛି; ମୋର ସେହିପରି ଚାରିଟା ପାଦ ଅଛି । ତାପରି ମୋର ମଧ୍ୟ ନଖ ଓ ଦାନ୍ତ ଅଛି । ତେବେ ସେ କାହିଁକି ମୋର ପ୍ରଭୁ ହେବ ଓ ମୁଁ ତାର ଭୃତ୍ୟ ହେବି ? ତାର ଅନୁଗ୍ରହକୁ ଚାହିଁ ରହିବା ମୋର ଦରକାର ନାହିଁ । ଏଣିକି ମୁଁ ନିଜେ ଯାଇ ହାତୀ, ଘୋଡ଼ା, ହରିଣ ପ୍ରଭୃତି ମାରି ଖାଇବି । ମୁଁ ଦେଖୁଛି, 'ପ୍ରଭୁ, ବିଜେ କରନ୍ତୁ' ମୁଁ ଏହି ମନ୍ତ୍ରପାଠ କରିବାରୁ ସିଂହ ଯାଇ ଜୀବ ମାରୁଛି । ସେହିପରି ସିଂହ ଯେବେ ମୋତେ କହିବ 'ପ୍ରଭୁ, ବିଜେ କରନ୍ତୁ' ତାହାହେଲେ ମୁଁ ମଧ୍ୟ ସେହିପରି ବଣର ଜୀବଙ୍କୁ ମାରି ପାରିବି ।"

ଏହାପରେ ବର୍ଷେ ସେ ଦିନେ ସିଂହକୁ କହିଲା, "ମହାପ୍ରଭୁ, ମୁଁ ଏତେଦିନ ହେଲା ଆପଣଙ୍କ ପାଖେ ରହିଆସିଲିଣି । ଆପଣ ଜୀବ ମାରୁଛନ୍ତି, ମୋତେ ତାର ମାଂସ ଖାଇବାକୁ ଦେଉଛନ୍ତି । ଏବେ ଗୋଟିଏ ହାତୀ ମାରି ତାର ମାଂସ ଖାଇବାକୁ ମୋର ଇଚ୍ଛା ହେଉଅଛି । ତେଣୁ ମୋର ଅନୁରୋଧ, ମୁଁ ଆଜି ଗୁହାରେ ଆପଣଙ୍କ ଜାଗାରେ ଶୋଇ ରହିବି । ଆପଣ ପର୍ବତ ଉପରକୁ ଯାଇ କୌଣସିଠାରେ ହାତୀ ଦେଖିଲେ ମୋତେ ଯେ କଥା ଜଣାଇ କହିବେ, 'ପ୍ରଭୁ, ବିଜେ କରନ୍ତୁ ।' ତାପରେ ମୁଁ ଯାଇ ସେ ହାତୀକୁ ମାରି ନେଇ ଆସିବି । ମୋତେ ଏତିକ ଦୟା କରିବାକୁ ଆପଣ କୁଣ୍ଠିତ ହେବେ ନାହିଁ ।"

ସିଂହ କହିଲେ, "ହେ ଶୃଗାଳ, ହାତୀକୁ ବଧ କରିବା ପାଇଁ ଜଗତରେ ସିଂହ ଛଡ଼ା ଅନ୍ୟ ପ୍ରାଣୀ ଜନ୍ମିନାହିଁ । କୌଣସି ଶୃଗାଳ କେବେ ହସ୍ତୀକୁ ଆକ୍ରମଣ କରି ବଧ କରିବାର ଦେଖାନାହିଁ କି ଶୁଣାନାହିଁ । ତୋର ଏ ବୃଥା ଅଭିଳାଷ ତ୍ୟାଗ କର; ପୂର୍ବପରି ମୁଁ ଜୀବ ମାରିଆଣି ତୋତେ ଖାଇବାକୁ ଦେବି ।"

ସିଂହ ଯେତେ ବୁଝାଇଲେ ସୁଦ୍ଧା ଶୃଗାଳ ନିଜ ଇଚ୍ଛାରୁ ବିରତ ହେଲା ନାହିଁ । ଶେଷରେ ସିଂହ ଶୃଗାଳର ଅନୁରୋଧ ଏଡ଼ି ନ ପାରି କହିଲେ, "ହେଉ, ତୋର ଇଚ୍ଛା ଅନୁସାରେ କାର୍ଯ୍ୟ କରାଯାଉ ।"

ସେଦିନ ଶୃଗାଳ ଗୁହାରେ ଶୋଇରହିଲା । ସିଂହ ପର୍ବତ ଉପରକୁ ଯାଇ ଚାରିଆଡ଼କୁ ଚାହିଁ ଏକ ସ୍ଥାନରେ ଗୋଟିଏ ହସ୍ତୀକୁ ଦେଖିପାରିଲେ । ସେ ଗହ୍ୱର ଦ୍ୱାରକୁ ଫେରିଯାଇ ଶୃଗାଳକୁ ହସ୍ତୀ ଥିବା ସ୍ଥାନଟି ଦେଖାଇ କହିଲେ, "ପ୍ରଭୁ, ବିଜେ କରନ୍ତୁ ।" ଶୃଗାଳ ଉଠିପଡ଼ି କୁଦାମାରି ଦୁଇ ତିନଥର 'ହୁକେ ହୋ' ବୋଲି ଗର୍ଜିଲା । ତାପରେ ସେ ହାତୀର ମୁଣ୍ଡକୁ ଲକ୍ଷ୍ୟ କରି କୁଦା ମାରିଲା; କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହୋଇ ହାତୀର ପାଦ ପାଖରେ ପଡ଼ିଗଲା । ହାତୀ ତାର ଆଗ ଡାହାଣ ଗୋଡ଼ଟି ନେଇ ତା ମୁଣ୍ଡ ଉପରେ ପକାଇଦେବା ସଙ୍ଗେ ସଙ୍ଗେ ତାର ମୁଣ୍ଡର ହାଡ଼ ଗୁଣ୍ଡ ହୋଇଗଲା ଓ ତାର

ମଗଜ ବାହାର ପଡ଼ିବାରୁ ତତ୍‌କ୍ଷଣାତ୍ ତାର ମୃତ୍ୟୁ ହେଲା । ତତ୍ପରେ ହାତୀ ଶୃଗାଳର ଦେହକୁ ଚକଟି ଏକ ମାଂସପିଣ୍ଡରେ ପରିଣତ କରିଦେଲା ଓ ଗମ୍ଭୀର ଗର୍ଜନ କରି ବନମଧ୍ୟକୁ ଚାଲିଗଲା ।

ବୋଧିସତ୍ତ୍ୱ ଦୂରରୁ ଶୃଗାଳର ଏହି ଦୁର୍ଦ୍ଦଶା ଦେଖି କହିଲେ, "ରେ ଉଦ୍ଧତ ଶୃଗାଳ, ଏବେ ତୁ ଗର୍ଜନ କରୁଥିଲୁ । ତୁ ସ୍ୱୟଂ କପଟ ବିକ୍ରମ ପ୍ରକାଶ କରି ଯୁଦ୍ଧଭୂମିରେ ଗର୍ଜନ କରିଥିଲୁ, ତାର ପ୍ରମାଣ ହେଉଛି ତୋର ଏହି ପ୍ରାଣହୀନ ମାଂସପିଣ୍ଡ ।"

ଶୃଗାଳ ତାର ଗର୍ବର ଉପଯୁକ୍ତ ଦଣ୍ଡ ପାଇଲା ।

## କୁରଙ୍ଗ ମୃଗ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ହରିଣ ଜନ୍ମ ପାଇଥିଲେ । ବନ ମଧ୍ୟରେ ଏକ ବୃହତ୍ ପୁଷ୍କରିଣୀ ତୀରରେ ସେ ବାସ କରୁଥିଲେ । ପୁଷ୍କରିଣୀଠାରୁ ଅଳ୍ପ-ଦୂରରେ ଗୋଟିଏ ବୃକ୍ଷରେ କାଠହଣା ପକ୍ଷୀଟିଏ ବାସ କରୁଥିଲା । ପୁଷ୍କରିଣୀର ଜଳ ମଧ୍ୟରେ ଗୋଟିଏ କଚ୍ଛପ ରହୁଥିଲା । ତିନିହେଁ ପରସ୍ପରର ନିକଟରେ ରହିଥିବାରୁ ସମୟକ୍ରମେ ସେମାନଙ୍କ ମଧ୍ୟରେ ବନ୍ଧୁତା ଜାତ ହେଲା ।

ଥରେ ଜଣେ ଶିକାରୀ ବନ ମଧ୍ୟରେ ବୁଲି ବୁଲି ସେହି ପୁଷ୍କରିଣୀ ନିକଟରେ ଉପସ୍ଥିତ ହେଲା । ପୁଷ୍କରିଣୀତଟରେ ସେ ଦେଖିଲା ଯେ ଗୋଟିଏ ହରିଣ ଜଳମଧ୍ୟକୁ ପଶିଥିବାର ପଦଚିହ୍ନ ପଡ଼ିଛି । ସେ ଚମଡ଼ାର ଗୋଟିଏ ଫାଶ ବସାଇ ନିଜ ଘରକୁ ଚାଲିଗଲା । ରାତିର ପ୍ରଥମ ପ୍ରହର ବେଳକୁ ବୋଧିସତ୍ତ୍ୱ ସେହି ଫାଶରେ ପଡ଼ିଯାଇ ବିକଳଭାବରେ ଚିତ୍କାର କଲେ । ସେହି ଚିତ୍କାର ଶୁଣି କାଠହଣା ଚଢ଼େଇ ବୁଝିପାରିଲା ଯେ ବୋଧିସତ୍ତ୍ୱ ବ୍ୟାଧର ଫାଶରେ ପଡ଼ିଯାଇଅଛନ୍ତି । ସେ ତତ୍‌କ୍ଷଣାତ୍ ଉଡ଼ିଆସି ତାଙ୍କ

ପାଖରେ ପହଞ୍ଚିଗଲା । କଚ୍ଛପ ମଧ୍ୟ ପାଣିରୁ ଉଠି ଧୀରେ ଧୀରେ ସେଠାରେ ପହଞ୍ଚିଲା । ତିନିହେଁ ଯାକ ମିଳି ବିଚାର କରିବାକୁ ଲାଗିଲେ ।

କାଠହଣା କହିଲା, "କଚ୍ଛପ ଭାଇ, ତୁମର ଦାନ୍ତ ଖୁବ୍ ଟାଣୁଆ । ତୁମେ ଦାନ୍ତରେ ଏହି ଫାଶକୁ କାଟୁଥାଅ । ବ୍ୟାଧ ଯେପରି ଏଠାକୁ ନ ଆସେ ମୁଁ ତାର ଉପାୟ କରୁଛି । ଫାଶ ଛିଣ୍ଡିଗଲେ ହରିଣ ଭାଇ ପଳାଇ-ଯିବେ; ତୁମେ ମଧ୍ୟ ପାଣିରେ ବୁଡ଼ିଯିବ ।"

କଚ୍ଛପ ଫାଶକୁ ଦାନ୍ତରେ ଛିଣ୍ଡାଇବାକୁ ଲାଗିଲା । କାଠହଣା ଉଡ଼ି ଉଡ଼ି ବ୍ୟାଧର ଘରଠାରେ ପହଞ୍ଚିଲା । ପାହାନ୍ତିଆ ବେଳକୁ ବ୍ୟାଧ ଗୋଟାଏ ଛୁରୀ ଧରି ପୋଖରୀକୂଳକୁ ଯିବାପାଇଁ ବାହାରିଲା । କାଠହଣା ରାତିଯାକ ଅନିଦ୍ରା ରହି ଜଗି ରହିଥିଲା । ବ୍ୟାଧ ଘରୁ କବାଟ ଫିଟାଇ ବାହାରିଲାମାତ୍ରେ କାଠହଣା ତାକୁ ଡେଣାରେ ପିଟି ଥଣ୍ଟରେ ତା ମୁହଁକୁ ଖୁମ୍ପିବାରେ ଲାଗିଲା । ବ୍ୟାଧ ବିରକ୍ତ ହୋଇ କହିଲା, "କାହୁଁ ଗୋଟାଏ କଦର୍ଯ୍ୟ ଚଢ଼େଇ ଆସି ବିଘ୍ନ ଘଟାଇଲାଣି । ବର୍ତ୍ତମାନ ଅଶୁଭ ବେଳା । କିଛି ସମୟ ପରେ ଯିବି ।" ଏହା କହି ସେ ଘରଭିତରକୁ ଫେରିଗଲା । କିଛି ବେଳ ପରେ ସେ ପୁଣି ଛୁରୀ ଧରି ବାହାରିଲା । କିନ୍ତୁ ଏଥର ସେ ବାରିଆଡ଼ କବାଟ ଫିଟାଇ ବାହାରିଲା । କାଠହଣା ଏଥର ମଧ୍ୟ ପୂର୍ବପରି ତାକୁ ଡେଣାରେ ପିଟି ଖୁମ୍ପିବାକୁ ଲାଗିଲା। ବ୍ୟାଧ ନିତାନ୍ତ ବିରକ୍ତ ହୋଇ କହିଲା, "ଏ ଦୁଷ୍ଟ ଚଢ଼େଇ ମୋ ପଛେ ପଛେ ଲାଗିଛି । ରାତି ପାହିଗଲେ ସେ ପଳାଇଯିବ । ସେତେବେଳେ ମୁଁ ନିଶ୍ଚିନ୍ତରେ ଯାଇପାରିବି ।" ଏହା କହି ସେ ପୁଣି ଘରଭିତରକୁ ଯାଇ ବିଶ୍ରାମ ନେଲା ।

ସକାଳ ହେଲା । ସୂର୍ଯ୍ୟକିରଣରେ ଚାରିଆଡ଼ ଉଜ୍ଜ୍ୱଳ ଦିଶିଲା । ଚାରି-ଆଡ଼କୁ ଚାହିଁ ବ୍ୟାଧ କାଠହଣା ଚଢ଼େଇକୁ ଦେଖିପାରିଲା ନାହିଁ । ସେ ହାତରେ ଛୁରୀ ଧରି ପୁଷ୍କରିଣୀ ତୀର ଆଡ଼କୁ ଚାଲିଲା ।

ଏଣେ କାଠହଣା ଆଗରୁ ଉଡ଼ିଯାଇ ତାର ବନ୍ଧୁମାନଙ୍କୁ କହିଲା, "ଭାଇମାନେ, ବ୍ୟାଧ ଛୁରୀ ଧରି ଏ ଆଡ଼କୁ ଆସୁଛି । ଶୀଘ୍ର କାମ ଶେଷ

କର । ନୋହିଲେ ବିପଦ ଘଟିବ ।"

ସେତେବେଳକୁ କଚ୍ଛପ ଫାଶର ଗୋଟିଏ ଗଣ୍ଠି ଛଡ଼ା ଆଉ ସବୁ ଗଣ୍ଠି କାଟିସାରିଥିଲା । ସେ ପ୍ରାଣପଣ ସେଇଟିକୁ ଦାନ୍ତରେ କାଟିବାକୁ ଲାଗିଲା । ଏଣେ ବ୍ୟାଧ ଆସି ଖୁବ୍ ନିକଟରେ । ବୋଧିସତ୍ତ୍ୱ ଜୀବନବିକଳରେ ଗୋଡ଼କୁ ଘୁଞ୍ଚିଦେବାରୁ ସେ ଗଣ୍ଠିଟି ଛିଡ଼ିଗଲା ଓ ବିଜୁଳିବେଗରେ ସେ ଉଠି ବଣ ଭିତରକୁ ପଳାଇଗଲେ । କାଠହଣା ଗଛ ଅଗରେ ବସିଥିଲା । କିନ୍ତୁ କଚ୍ଛପ ଏତେବେଳ ଧରି ଫାଶ କାଟି କାଟି ଏତେ କ୍ଲାନ୍ତ ହୋଇପଡ଼ିଥିଲା ଯେ ସେ ପୁଷ୍କରିଣୀ ଭିତରକୁ ଯାଇପାରିଲା ନାହିଁ । ବ୍ୟାଧ ଦଉଡ଼ି ଆସି ତାକୁ ଧରି ନିଜ ଥଳିରେ ପୂରାଇଦେଲା । ଥଳୀର ମୁହଁକୁ ବାନ୍ଧିଦେଇ ସେ ତାହାକୁ ଗଛର ଗୋଟିଏ ଡାଳରେ ଝୁଲାଇ ଦେଲା । ସେ ମନେ ମନେ କହିଲା, "ହରିଣ ହରିଣକୁ ନେଇଗଲା, ଯାହା ହେଉ ତା ବଦଳରେ ଏ କଚ୍ଛପଟି ଦେଇଯାଇଛି । ଏଇଥିରେ ମୋର ଆଜ ଦିନଟା ଚଳିଯିବ ।"

ବୋଧିସତ୍ତ୍ୱ ଦେଖିଲେ ଯେ କଚ୍ଛପ ବ୍ୟାଧର ଥଳୀରେ ରହିଲାଣି । ତାର ଜୀବନ ରକ୍ଷା କରିବା ପାଇଁ ସେ ପ୍ରତିଜ୍ଞା କଲେ । ସେ ବ୍ୟାଧର ଖୁବ୍ ନିକଟକୁ ଆସି ଖୁବ୍ ହାଲିଆ ହୋଇଥିବାର ଛଳନା କଲେ। ତହୁଁ ତାଙ୍କୁ ଧରିବା ପାଇଁ ବ୍ୟାଧର ପୁଣି ଆଶା ହେଲା । ସେ ଛୁରୀ ଧରି ତାଙ୍କ ପଛେ ପଛେ ଧାଇଁଲା । ବୋଧିସତ୍ତ୍ୱ ଅତି ସାବଧାନରେ ବ୍ୟାଧଠାରୁ ନିଜକୁ ଅତି ଅଳ୍ପ ଦୂରରେ ରଖି ବନ ମଧ୍ୟରେ ପଶିଗଲେ । ବ୍ୟାଧ ତାଙ୍କ ପଛେ ପଛେ ଧାଇଁଥାଏ । ହଠାତ୍ ବୋଧିସତ୍ତ୍ୱ ପଳାଇ ଯାଇ ବ୍ୟାଧଠାରୁ ଲୁଚିଗଲେ ଓ ଅନ୍ୟ ଏକ ବାଟରେ ଯାଇ ପୋଖରୀକୂଳରେ ପହଞ୍ଚିଲେ । ସେ କୁଦା ମାରି ଶିଙ୍ଗରେ ବ୍ୟାଧର ଥଳୀକୁ ତଳେ ପକାଇଦେଲେ ଓ ତାକୁ ଚିରିଦେଇ କଚ୍ଛପକୁ ବାହାର କରିଦେଲେ । କାଠହଣା ଗଛରୁ ମଧ୍ୟ ତଳକୁ ଓହ୍ଲାଇ ଆସିଲା ।

ବୋଧିସତ୍ତ୍ୱ ସେ ଦୁହିଁଙ୍କୁ କହିଲେ, "ତୁମେ ଦୁହେଁ ମୋର ଜୀବନ ରକ୍ଷା କରି ପ୍ରକୃତ ବନ୍ଧୁର କାର୍ଯ୍ୟ କରିଅଛ । ବର୍ତ୍ତମାନ ବ୍ୟାଧ ଏଠାକୁ ଆସିବ । କଚ୍ଛପ ଜଳଭିତରକୁ ପଶିଯାଉ । ମୁଁ ମଧ୍ୟ ପଳାଇଯିବି । କିନ୍ତୁ ଗଛଡାଳରେ

ବସା ଭିତରେ କାଠହଣାର ସ୍ତ୍ରୀ ଓ ପିଲମାନେ ଅଛନ୍ତି । ବ୍ୟାଧ ଆମ ଦୁହିଁଙ୍କୁ ନ ପାଇ ବସାରୁ ପିଲମାନଙ୍କୁ ଧରିନେବ । ତେଣୁ କାଠହଣା ତାର ସ୍ତ୍ରୀ ଓ ପିଲମାନଙ୍କୁ ନେଇ ଶୀଘ୍ର ଦୂରକୁ ପଳାଇଯିବା ଉଚିତ । ତାହାହେଲେ ସମସ୍ତଙ୍କର ଜୀବନ ନିରାପଦ ହେବ ।”

ବୋଧିସତ୍ତ୍ୱଙ୍କ ପରାମର୍ଶରେ କାଠହଣା ତାର ପିଲାପିଲିଙ୍କି ନେଇ ଦୂରକୁ ପଳାଇଗଲା । କଚ୍ଛପ ପାଣିରେ ବୁଡ଼ିଗଲା । ବୋଧିସତ୍ତ୍ୱ ବ' କୁ ଚାଲିଗଲେ ।

କିଛି ସମୟ ପରେ ବ୍ୟାଧ ଆସି ଦେଖିଲା, ପୋଖରୀ କୂଳରେ ଚମ୍ବ ଥଳୀଟି ପଡ଼ିଛି । ପାଖରେ କେହି ନାହାନ୍ତି । ସେ ଦୁଃଖରେ ନିଜ ଘରକୁ ଫେରିଗଲା ।

ତିନି ବନ୍ଧୁ ପରସ୍ପରର ସାହାଯ୍ୟ କରି ସୁଖରେ ଦିନ କଟାଇବାକୁ ଲାଗିଲେ ।

## କଚ୍ଛପ ଜାତକ

ଏକ ସମୟରେ ବୋଧିସତ୍ତ୍ୱ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କର ଜଣେ ସଭାସଦ ଥିଲେ । ସେ ରାଜାଙ୍କୁ କେବଳ ରାଜ୍ୟଶାସନ ବିଷୟରେ ପରାମର୍ଶ ଦେଉ-ନ ଥିଲେ; ଧର୍ମ ବିଷୟରେ ମଧ୍ୟ ଉପଦେଶ ଦେଉଥିଲେ । ଏହି ରାଜା ବ୍ରହ୍ମ-ଦତ୍ତଙ୍କର ଗୋଟିଏ ପ୍ରଧାନ ଦୋଷ ଥିଲା ଯେ ସେ ଅତିରିକ୍ତ କଥା କହୁଥିଲେ । କଥାବାର୍ତ୍ତା ବେଳେ ସେ ଅନ୍ୟ କାହାରିକୁ କିଛି କହିବାକୁ ସୁଯୋଗ ଦେଉ-ନ ଥିଲେ । ବୋଧିସତ୍ତ୍ୱ ବାରମ୍ବାର ଉପଦେଶ ଦେବା ସତ୍ତ୍ୱେ ରାଜା ଏହି ଦୁରଭ୍ୟାସ ଛାଡ଼ିପାରୁ ନ ଥିଲେ । ବୃଥା ଗଳ୍ପର କୁଫଳ ରାଜାଙ୍କୁ ପ୍ରତ୍ୟକ୍ଷ ଦେଖାଇଦେବା ପାଇଁ ବୋଧିସତ୍ତ୍ୱ ସୁଯୋଗ ଖୋଜୁଥିଲେ ।

ଏହି ସମୟରେ ହିମାଳୟର ଏକ ପ୍ରଦେଶରେ ଦୁଇଟି ହଂସ ବାସ କରୁଥିଲେ । ଦିନେ ସେ ଦୁହେଁ ଉଡ଼ିଆସି ଗୋଟିଏ ପୁଷ୍କରିଣୀ ତଟରେ ଆହାର ଅନ୍ୱେଷଣ କରୁଥିଲେ । ଗୋଟିଏ କଚ୍ଛପ ଜଳ ମଧ୍ୟରୁ ବାହାରି ସେ ଦୁହିଁଙ୍କୁ ଦେଖିଲା । କଚ୍ଛପ ଓ ହଂସମାନଙ୍କ ମଧ୍ୟରେ ଅନେକ ମଧୁର ଆଳାପ ହେଲା । କ୍ରମେ ସେମାନେ କଚ୍ଛପର ପରିଚିତ ବନ୍ଧୁ ହୋଇଗଲେ । ପ୍ରତିଦିନ ହଂସ ଦୁହେଁ ଆସି କେତେକ ସମୟ ପର୍ଯ୍ୟନ୍ତ କଚ୍ଛପ ସହିତ ଗଳ୍ପ ନ କଲେ କାହାରି ମନରେ ଶାନ୍ତି ଆସୁ ନ ଥିଲା ।

ଦିନେ କଥାପ୍ରସଙ୍ଗରେ ହଂସ ଦୁହେଁ କହିଲେ, "ବନ୍ଧୁ, ହିମାଳୟ ପ୍ରଦେଶରେ ଆମେ ଯେଉଁ ପର୍ବତଶିଖରରେ ବାସ କରୁଁ ତାହାର ନାମ ଚିତ୍ରକୂଟ । ଆମର ଗହ୍ୱରଟି ସ୍ୱର୍ଣ୍ଣରେ ନିର୍ମିତ । ଦିନେ ଆମ ସଙ୍ଗରେ ଯାଇ ଆମ ଘର ଦେଖିଆସିବ ।"

କଚ୍ଛପ କହିଲା, "ତୁମମାନଙ୍କ ଘରକୁ ଗଲେ ମୁଁ ଯେ ଅତ୍ୟନ୍ତ ଆନନ୍ଦିତ ହେବି ଏଥିରେ ସନ୍ଦେହ ନାହିଁ । କିନ୍ତୁ ସ୍ଥଳଭାଗରେ ମୋର ଗତି କେତେ ମନ୍ଥର ତାହା କାହାରିକୁ ଅଜଣା ନାହିଁ । ତେଣୁ ତୁମ ଘରକୁ ଯିବା ମୋ ପକ୍ଷରେ ଆକାଶକୁସୁମ ପରି ।"

ହଂସମାନେ କହିଲେ, "ତୁମେ ଅବଶ୍ୟ ଚାଲି ଚାଲି ଆମ ଘରକୁ ଯାଇ-ପାରିବ ନାହିଁ । କିନ୍ତୁ ଆମେ ଦୁହେଁ ତୁମକୁ ନେଇ ଯାଇପାରିବୁ । ତୁମେ କେବଳ ଗୋଟିଏ କାମ କରିପାରିଲେ ହେଲା ।"

କଚ୍ଛପ ଆଗ୍ରହରେ ପଚାରିଲା, "ମୋର ତୁମ ସୁନାଘର ଦେଖିବାକୁ ଭାରି ଇଚ୍ଛା; ତୁମେ ଯାହା କହିବ ତାହା ନିଶ୍ଚୟ କରିବି ।"

ହଂସମାନେ ଉତ୍ତର କଲେ, "ତୁମକୁ ତୁଣ୍ଡ ବନ୍ଦ କରି ରହିବାକୁ ହେବ । ଆମ ଘରେ ନ ପହଞ୍ଚିବା ପର୍ଯ୍ୟନ୍ତ ତୁମେ କାହାରିକୁ କେବେହେଲେ ପାଟି ଫିଟାଇବ ନାହିଁ ।"

ଏହା ଶୁଣି କଚ୍ଛପ କହିଲା, "ଏଇ ସାମାନ୍ୟ କଥା ମୁଁ ଆନନ୍ଦରେ କରି-ପାରିବି । ମୁଁ କାହାରିକୁ କଦାପିହେଲେ କହିବି ନାହିଁ । ମୋତେ ତୁମ ଘରକୁ

ନେଇଯାଅ ।”

ତହୁଁ ହଂସ ଦୁହେଁ ଖଣ୍ଡିଏ କାଠି ଆଣି ତାହାର ମଝି ଅଂଶଟିକୁ ଦୃଢ଼-ଭାବରେ କାମୁଡ଼ି ଧରିବା ପାଇଁ କଚ୍ଛପକୁ କହିଲେ । କଚ୍ଛପ ତାହା କରିବାରୁ ସେ ଦୁହେଁ କାଠର ଗୋଟିଏ ଲେଖାଏଁ ଅଗ ଥଣ୍ଟରେ ଧରି ଉଡ଼ିବାକୁ ଲାଗିଲେ । କଚ୍ଛପ ଆକାଶରେ ଯାଉ ଯାଉ ତଳେ ଗ୍ରାମ, ନଗର ବନ ପ୍ରଭୃତି ଦେଖି ଅତ୍ୟନ୍ତ ଆନନ୍ଦ ଅନୁଭବ କଲା ।

ଗୋଟିଏ ନଗର ଉପରେ ସେମାନେ ଏହିପରି ଉଡ଼ିଯାଉଥିବାବେଳେ କେତେକ ପିଲା ସେମାନଙ୍କୁ ଦେଖି ବିସ୍ମୟରେ ଚିତ୍କାର କଲେ, “ଆରେ, ଦେଖ, ଦେଖ । କି ବିଚିତ୍ର କଥା ! ଦୁଇଟା ହଂସ ଗୋଟାଏ କଇଁଛକୁ ନେଇ ଆକାଶରେ ଉଡ଼ି ଯାଉଛନ୍ତି !” ଏ କଥା ଶୁଣି କଚ୍ଛପ ପାଟି ବନ୍ଦ କରି ରହିବା କଥା ଭୁଲିଗଲା । ସେ କହିଉଠିଲା, “ମୋର ବନ୍ଧୁମାନେ ମୋତେ ନେଉଛନ୍ତି; ସେଥିରେ ତୁମର କଅଣ ହେଲା ?” କିନ୍ତୁ ସେ ସବୁ କଥା କହିବା ପୂର୍ବରୁ ତୁଣ୍ଡ ଖୋଲିଗଲା ମାତ୍ରେ କାଠିଖଣ୍ଡିକରୁ ତଳେ ଖସିପଡ଼ି ପ୍ରାଣ ହରାଇଲା ।

ସେ ଯେଉଁଠାରେ ଖସିପଡ଼ିଲା, ତାହା ହେଉଛି ବାରାଣସୀ ରାଜାଙ୍କ ପ୍ରାସାଦର ଏକ ଅଂଶ । ସେଠାରେ ରାଜା ବ୍ରହ୍ମଦତ୍ତ, ବୋଧିସତ୍ତ୍ୱ ଓ ତାଙ୍କର ଅନେକ କର୍ମଚାରୀ ବସିଥିଲେ । ସେମାନେ ଚିତ୍କାର କରି ଦଉଡ଼ି ଆସିଲେ । ସମସ୍ତେ ବିସ୍ମୟରେ କହିଲେ—ଆକାଶରୁ କାହିଁ କଚ୍ଛପଟାଏ ଖସିପଡ଼ି ପ୍ରାଣ ହରାଇଲା !

ବୋଧିସତ୍ତ୍ୱ କଚ୍ଛପ ଓ ହଂସବୃତ୍ତାନ୍ତ ଜାଣିପାରି ଭାବିଲେ, ‘ରାଜାଙ୍କୁ ଚୁପ୍ ରହିବା ପାଇଁ ଶିକ୍ଷା ଦେବାର ଏହା ହିଁ ଉପଯୁକ୍ତ ଅବସର ।” ସେ ରାଜାଙ୍କୁ କହିଲେ, “ମହାରାଜ ! ଏ କଚ୍ଛପଟିକୁ ଦୁଇଟି ହଂସ ଉଡ଼ାଇ ନେଉଥିଲେ । କିନ୍ତୁ ଏ ଅଧମ କଥା କହିବାକୁ ଯାଇ କାଠକୁ ଛାଡ଼ିଦେବାରୁ ତଳେ ପଡ଼ି ପ୍ରାଣ ହରାଇଲା । ଯେଉଁମାନେ ସମୟ ନ ବୁଝି ଅଯଥା ଗୁଡ଼ାଏ କହିବାକୁ ଯାଆନ୍ତି, ସେମାନଙ୍କର ଏହିପରି ଦଶା ଘଟିଥାଏ ।”

ରଜା ବୁଝି ପାରିଲେ ଯେ ବୋଧିସତ୍ତ୍ୱ ତାଙ୍କୁ ହିଁ ଲକ୍ଷ୍ୟ କରି ଏ କଥା କହୁଅଛନ୍ତି । ତେଣୁ ସେ ପଚାରିଲେ, "ବୋଧିସତ୍ତ୍ୱ, ତୁମେ କଅଣ ମୋତେ ଲକ୍ଷ୍ୟ କରି ଏହା କହୁଛ ?"

ବୋଧିସତ୍ତ୍ୱ କହିଲେ, "ଆପଣଙ୍କୁ ଲକ୍ଷ୍ୟ କରି କହିପାରିଥାଏଁ ବା ଅନ୍ୟ କାହାରିକୁ ଲକ୍ଷ୍ୟ କରି କହିପାରିଥାଏଁ । କିନ୍ତୁ ପ୍ରକୃତ ସତ୍ୟ ହେଉଛି, ଅଧିକ ଗୁଡ଼ାଏ କହିବାର ପରିଣାମ ଅତି ଦୁଃଖଜନକ ହୋଇଥାଏ ।"

ସେହି ଦିନଠାରୁ ରଜା ନିଜର ରସନା ସଂଯତ କରି ଅଯଥା ଗୁଡ଼ାଏ କହିବାରୁ ବିରତ ହେଲେ । ବୋଧିସତ୍ତ୍ୱଙ୍କର ଉଦ୍ଦେଶ୍ୟ ସିଦ୍ଧ ହେଲା ।

## କୂଟ ବାଣିଜ୍ୟ ଜାତକ

ଏକଦା ବୋଧିସତ୍ତ୍ୱ ବାରାଣସୀର ରଜା ବ୍ରହ୍ମଦତ୍ତଙ୍କର ଜନୈକ ମନ୍ତ୍ରୀଙ୍କର ପୁତ୍ରରୂପେ ଜନ୍ମିଥିଲେ । ସେ ଉପଯୁକ୍ତ ଶିକ୍ଷାଲାଭ କଲା ପରେ ବୟଃପ୍ରାପ୍ତ ହେବାରୁ ରଜା ତାଙ୍କୁ ପ୍ରଧାନ ବିଚାରପତି ରୂପେ ନିଯୁକ୍ତ କଲେ ।

ସେ ସମୟରେ ରାଜ୍ୟର ଦୁଇ ଜଣ ବଣିକ ପରସ୍ପର ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ । ସେ ଦୁହିଁଙ୍କ ମଧ୍ୟରୁ ଜଣକର ଘର ମଫସଲର ଗୋଟିଏ ଗ୍ରାମରେ; ଅନ୍ୟ ଜଣକ ସହରରେ ବାସ କରୁଥିଲା । ଥରେ ମଫସଲି ବଣିକ ପାଞ୍ଚ ଶହ ଲଙ୍ଗଳଲୁହା ବନ୍ଧୁ ନିକଟରେ ରଖି ବାଣିଜ୍ୟ ଉଦ୍ଦେଶ୍ୟରେ ଦୂର ସ୍ଥାନକୁ ଯାଇଥିଲା । ସହରୀ ବଣିକ କିଛି ଦିନ ପରେ ସେଗୁଡ଼ିକ ବିକି କରିଦେଇ ବିକ୍ରୟଲବ୍ଧ ଅର୍ଥକୁ ଆତ୍ମସାତ୍ କଲା ଓ ଲଙ୍ଗଳଲୁହା ରଖିଥିବା ସ୍ଥାନରେ ଗୁଡ଼ାଏ ମୂଷାମାଟି ଜମା କରିଦେଲା । କିଛିଦିନ ପରେ ଅପର ବଣିକ ଫେରି ଆସି ତାହାର ଲଙ୍ଗଳଲୁହାଗୁଡ଼ିକ ମାଗିଲା । ତହୁଁ ସହରୀ ବଣିକ ମୂଷାମାଟିକୁ ଦେଖାଇ କହିଲା, "ବନ୍ଧୁ,

ତୁମର ଲଙ୍ଗଳଲୁହାଗୁଡ଼ିକ ଏଇଠାରେ ଥିଲା । ଦୁଃଖର କଥା, ମୂଷାମାନେ ସବୁଯାକ ଖାଇଗଲେ ।"

ମଫସଲୀ ବଣିକ କହିଲା, "ମୂଷାମାନେ ମୋର ଲଙ୍ଗଳଲୁହାଗୁଡ଼ିକ ଖାଇଗଲେ । ତୁମେ କଅଣ କରିବ ? ମୋର ଭାଗ୍ୟ ଖରାପ । ମୋତେ କ୍ଷତି ସହିବାକୁ ହେବ । ତୁମର କି ଦୋଷ ।"

ଏହା କହି ସେ ଗାଧୋଇବାକୁ ବାହାରିଲା । ସେ ତେଲ ଲଗାଇ ଲଗାଇ କହିଲା, "ବନ୍ଧୁ, ତୁମ ପୁଅକୁ ଟିକିଏ ମୋ ସଙ୍ଗରେ ପଠାଅ । ସେ ମୋତେ ନଦୀକୂଳକୁ ବାଟ ଦେଖାଇଦେବ ।" ସହରୀ ବଣିକ କିଛି ମାତ୍ର ସନ୍ଦେହ ନ କରି ପୁଅକୁ ତା ସଙ୍ଗେ ପଠାଇଲା ।

ମଫସଲୀ ବଣିକ ପିଲାଟିକୁ ନେଇ ତାର ଜଣେ ପରିଚିତ ଲୋକର ଘରେ ରଖି ଦ୍ୱାର ବନ୍ଦ କରିଦେଲା । ନିଜେ ନଦୀରେ ସ୍ନାନ କରି ବନ୍ଧୁଘରକୁ ଏକୁଟିଆ ଫେରିଆସିଲା । ତହୁଁ ସହରୀ ବଣିକ ପଚାରିଲା, "ତୁମେ ତ ଆସିଲ । ମୋ ପୁଅ କାହିଁ ?" ମଫସଲୀ ବଣିକ ଦୁଃଖପ୍ରକାଶ କରି କହିଲା, "ବନ୍ଧୁ, ବଡ଼ ଦୁଃଖର କଥା, ମୁଁ ନଦୀରେ ସ୍ନାନ କରୁଥିଲାବେଳେ ତୁମର ପୁଅ କୂଳରେ ବସିଥିଲା । ହଠାତ୍ କାହୁଁ ଗୋଟାଏ ଚିଲ ଉଡ଼ିଆସି ତାକୁ ଟେକିନେଇ ଚାଲିଗଲା । ମୁଁ ବହୁତ ପାଟିକଲି; କିନ୍ତୁ ଦ୍ୱହୁଁ ଦ୍ୱହୁଁ ଚିଲ ପିଲାକୁ ଧରି ଦୂରକୁ ଉଡ଼ିଗଲା । ମୁଁ ତାକୁ ଆଉ ଦେଖିପାରିଲି ନାହିଁ ।"

ସହରୀ ବଣିକ କ୍ରୋଧରେ କହିଲା, "ତୁ ମିଥ୍ୟାବାଦୀ । ଚିଲଟାଏ ଗୋଟାଏ ପିଲାକୁ ନେଇଯିବା ଅସମ୍ଭବ । ଶୀଘ୍ର ମୋ ପୁଅକୁ ଆଣି ଦେ ।"

ମଫସଲୀ ବଣିକ ଶାନ୍ତଭାବରେ କହିଲା, "ବନ୍ଧୁ, ମୋ ଉପରେ ରାଗ କରୁଛ କାହିଁକି ? ଚିଲଟାଏ ଗୋଟାଏ ପିଲା ନେଇଯିବା ଅସମ୍ଭବ, ସେ କଥା ମୁଁ ସ୍ୱୀକାର କରୁଛି । କିନ୍ତୁ ଭାଗ୍ୟ ଖରାପବେଳେ ଅସମ୍ଭବ କଥା ମଧ୍ୟ ଘଟିଥାଏ । ତୁମ ପୁଅକୁ ଚିଲ ନେଇଗଲା । ସେଥିରେ ମୋର ଦୋଷ କଅଣ ?"

ସହରୀ ବଣିକ ଆହୁରି ରାଗାନ୍ୱିତ ହୋଇ କହିଲା, "ବଦମାସ, ଚୋର;

ମୋର ପୁଅକୁ ନେଇ କଅଣ କଲୁ ; ତାକୁ ଆଣି ଶୀଘ୍ର ଦେ । ନ ହେଲେ ମୁଁ ବାରାଣସୀଙ୍କୁ ଜଣାଇବ । ତୋର ଏଭଳି କାର୍ଯ୍ୟ ପାଇଁ ସେ ତୋତେ ଉପଯୁକ୍ତ ଦଣ୍ଡ ଦେବେ ।"

ମଫସଲି ବଣିକ ଅବିଚଳିତ ଭାବରେ କହିଲା, "ତୁମେ ଇଚ୍ଛା କଲେ ବାରାଣସୀଙ୍କୁ ଜଣାଇପାର । ସେ ମୋତେ ଯେଉଁ ଦଣ୍ଡ ଦେବେ ତା' ଭୋଗିବାକୁ ମୁଁ ପ୍ରସ୍ତୁତ । ତୁମ ପୁଅକୁ ଚିଲ ନେଇଗଲା । ସେଥିରେ ମୁଁ କଅଣ କରିଥାନ୍ତି ?"

ଅଗତ୍ୟା ସହରି ବଣିକ ବାରାଣସୀଙ୍କୁ ଯାଇ ବୋଧିସତ୍ତ୍ୱଙ୍କୁ ଜଣାଇଲେ, "ଧର୍ମାବତାର, ଏଇ ଲୋକଟା ମୋର ପୁଅକୁ ସଙ୍ଗରେ ନେଇ ନଦୀକୁ ଗାଧୋଇ ଯାଇଥିଲା । ଏବେ ସେ କହୁଛି—ମୋ ପୁଅକୁ ଗୋଟାଏ ଚିଲ ନେଇଗଲା । ଧର୍ମ ଅବତାର ହେଉ, ସେ ମୋର ପୁଅକୁ ଫେରାଇ ଦେବାପାଇଁ ହୁକୁମ ହେଉ ।"

ବୋଧିସତ୍ତ୍ୱ ଅପର ବଣିକକୁ କହିଲେ, "ସତ୍ୟ କହ, ତୁମେ ଏହାଙ୍କ ପୁଅକୁ ସଙ୍ଗରେ ନେଇ ନଦୀକୁ ଗାଧୋଇବାକୁ ଯାଇଥିଲ ?"

ବଣିକଟି ଉତ୍ତର କଲା, "ହଁ, ଧର୍ମାବତାର ! ଏହାଙ୍କ ପୁଅ ମୋ ସହିତ ଯାଇଥିଲା । କିନ୍ତୁ ଗୋଟିଏ ଚିଲ ତାହାକୁ ଧରି ଉଡ଼ିଗଲା ।"

ବୋଧିସତ୍ତ୍ୱ କହିଲେ, "ତୁମେ ସତ୍ୟ କଥା କହୁନାହଁ । ଚିଲଟାଏ ଗୋଟାଏ ପିଲାକୁ ଧରି ନେଇଯିବା କେହି କେବେ ଦେଖିନାହିଁ କି ଶୁଣିନାହିଁ ।"

ମଫସଲି ବଣିକ ଅତି ବିନୀତଭାବରେ କହିଲା, "ଧର୍ମାବତାର, ଅନୁମତି ମିଳିଲେ ମୁଁ ଗୋଟିଏ ପ୍ରଶ୍ନ ପଚାରିବି ।"

ବୋଧିସତ୍ତ୍ୱ ଉତ୍ତର କଲେ, "ତୁମର ଯାହା ପଚାରିବାର ଅଛି, ସ୍ୱଚ୍ଛନ୍ଦରେ ପଚାରିପାର ।"

ବଣିକଟି କହିଲା, "ଧର୍ମାବତାର, ଯଦି ଚିଲଟାଏ ଗୋଟିଏ ପିଲାକୁ

ନେଇ ନ ପାରେ, ତେବେ ମୂଷାମାନେ ପାଞ୍ଚ ଶହ ଲଙ୍ଗଳଲୁହା ଖାଇପାରିବେ କି ?"

ବୋଧିସତ୍ତ୍ୱ କହିଲେ, "ତୁମର ଏପରି ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ କଅଣ ?"

ବଣିକ ଉତ୍ତର କଲା, "ମହାଶୟ, ମୁଁ ଏହି ସହରୀ ବଣିକ ପାଖରେ ପାଞ୍ଚଶହ ଲଙ୍ଗଳଲୁହା ରଖିଦେଇ ଦୂରକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଇଥିଲି । ମୁଁ ଫେରିଆସି ମୋର ଲଙ୍ଗଳଲୁହା ମାଗିବାରୁ ସେ କହିଲା—ତୁମ ଲୁହାସବୁ ମୂଷା ଖାଇଗଲେ । ମୋତେ ସେ ମୂଷାମାଟି ମଧ୍ୟ ଦେଖାଇଦେଲା । ଧର୍ମାବତାର, ଯେଉଁଠାରେ ମୂଷାମାନେ ଲଙ୍ଗଳଲୁହା ଖାଇଦେଇ ପାରନ୍ତି, ସେଠାରେ ଚିଲ ମଣିଷପିଲା ଟେକିନେଇ ପଳାଇବା ଅସମ୍ଭବ ହେବ କାହିଁକି ? ବର୍ତ୍ତମାନ ମୋର ଲଙ୍ଗଳଲୁହା ବିଷୟରେ ଆପଣ ବିଚାର କରନ୍ତୁ ।"

ବୋଧିସତ୍ତ୍ୱ ଚିନ୍ତା କଲେ, ନିଶ୍ଚୟ ଏହି ଲୋକଟି ଠକ ସହିତ ଠକ ବ୍ୟବହାର କରିଛି । ସେ ଅପର ବଣିକକୁ କହିଲେ, "ଦେଖ, ଯେବେ ତାର ଲଙ୍ଗଳଲୁହାକୁ ମୂଷା ଖାଇଥିବେ, ତେବେ ତୁମର ପୁଅକୁ ଚିଲ ନେଇଯାଇଥିବ । ଯେସାକୁ ତେସା ନୀତିରେ ସେ ତୁମକୁ ଜବଦ କରିଛି । ମୋର ବିଶ୍ୱାସ, ତୁମେ ତାର ଲଙ୍ଗଳଲୁହା ଫେରାଇଦେଲେ, ସେ ତୁମ ପୁଅକୁ ଫେରାଇ ଦେଇପାରେ ।"

ପରିଶେଷରେ ସହରୀ ବଣିକ ଲଙ୍ଗଳଲୁହାଗୁଡ଼ିକ ଫେରାଇ ଦେବାକୁ ବାଧ୍ୟ ହେଲା । ମଫସଲୀ ବଣିକ ତାର ପୁଅଟିକୁ ଫେରାଇଦେଲା ।

# କୂର୍ମ ଜାତକ

ଅତି ପ୍ରାଚୀନ କାଳରେ କାଶୀ ରାଜ୍ୟରେ ଜଣେ ଅଧିବାସୀ ବାସ କରୁଥିଲା । ତାହାର ନାମ ସୁର । ଥରେ ସେ ବେପାର ଉଦ୍ଦେଶ୍ୟରେ ବାଣିଜ୍ୟଦ୍ରବ୍ୟ କ୍ରୟ କରିବା ପାଇଁ ହିମାଳୟ ପ୍ରଦେଶକୁ ଯାଇଥିଲା । ସେଠାରେ ସେ ଗୋଟିଏ ଅଦ୍ଭୁତ ଗଛ ଦେଖିବାକୁ ପାଇଲା । ଗଛଟିର ପ୍ରଧାନ କାଣ୍ଡ ନର ପାଞ୍ଚହାତ ପର୍ଯ୍ୟନ୍ତ ସିଧା ବଢ଼ିଯାଇ ସେଠାରୁ ତିନୋଟି ଶାଖା ବାହାରିଥିଲା । ଯେଉଁଠାରୁ ଏହି ତିନି ଶାଖା ବାହାରିଥିଲା, ସେଠାରେ କଳସୀ ପରି ଗୋଟିଏ ବଡ଼ ଗର୍ତ୍ତ ହୋଇଥିଲା । ବର୍ଷାକାଳରେ ବୃଷ୍ଟିଜଳ ଏହି ଗର୍ତ୍ତରେ ସଞ୍ଚିତ ହେଉଥିଲା । ଏହି ଗଛର ନିକଟରେ ଗୋଟିଏ ଅଁଳା ଗଛ ଓ ଗୋଟିଏ ଗୋଲମରିଚ ଗଛ ଥିଲା । ବେଳେ ବେଳେ ଏହି ଗଛମାନଙ୍କର ପାଚିଲା ଫଳ ସେହି ଗର୍ତ୍ତରେ ପଡ଼ୁଥିଲା । ଆହୁରି ମଧ୍ୟ ଅଳ୍ପ ଦୂରରେ ବନ୍ୟଧାନ ଜନ୍ମୁଥିଲା । ଶୁଆ ପ୍ରଭୃତି ପକ୍ଷୀମାନେ ଏହି ଧାନ୍ୟକୁ ନେଇ ଗଛ ଉପରେ ବସି ଖାଇବାବେଳେ ସେଥିରୁ କେତେକ ଚାଉଳ ଗର୍ତ୍ତ ମଧ୍ୟରେ ପଡ଼ିଯାଉଥିଲା । ଏହିପରି ଗର୍ତ୍ତରେ ଥିବା ପାଣି, ଅଁଳା, ମରିଚ ଓ ଚାଉଳ ସହିତ ସୂର୍ଯ୍ୟକିରଣରେ ପଚି ଏକପ୍ରକାର ଲାଲବର୍ଣ୍ଣ ଧାରଣ କରୁଥିଲା । ଗ୍ରୀଷ୍ମକାଳରେ ପକ୍ଷୀମାନଙ୍କୁ ଶୋଷ ହେବାରୁ ସେମାନେ ଏହି ଗର୍ତ୍ତର ପାଣି ପିଉଥିଲେ ଓ ନିଶାରେ ଅଚେତ ହୋଇ ଗଛ ମୂଳରେ ପଡ଼ିଯାଉଥିଲେ । କିଛି ସମୟ ଏହିପରି ଶୋଇରହି ସେମାନେ ଖୁବ୍ ଆନନ୍ଦରେ ପୁଣି ଉଡ଼ିଯାଉଥିଲେ । ବଣର ମାଙ୍କଡ଼, କୁକୁର ପ୍ରଭୃତି ଜୀବମାନେ ମଧ୍ୟ ଏହି ଜଳ ପିଇ ସେହିପରି କିଛି ସମୟ ଶୋଇ ପଡ଼ୁଥିଲେ । ନିଦ ଭାଙ୍ଗିଲା ବେଳକୁ ସେମାନଙ୍କୁ ବେଶ୍ ଫୂର୍ତ୍ତି ଆସୁଥିଲା । ଅଧିବାସୀ ଜଣକ ଏହି ପାଣିର ଏ ପ୍ରକାର ଗୁଣ ଦେଖି ମନେ ମନେ ଭାବିଲା, 'ଏ ପାଣି ବିଷାକ୍ତ ହୋଇଥିଲେ ଏ ଜୀବମାନେ ଏହାକୁ ପିଇଲେ ମରିଯାନ୍ତେ । କିନ୍ତୁ ଏମାନେ ଏହାକୁ ପିଇ କେବଳ କିଛି ସମୟ ଶୋଇପଡ଼ୁଛନ୍ତି । ନିଦରୁ ଉଠିଲାବେଳକୁ ସେମାନଙ୍କର ଅଧିକ ଫୂର୍ତ୍ତି ଦେଖାଯାଉଅଛି । ତେଣୁ ଏହା ବିଷାକ୍ତ ନୁହେ ।' ଏହିପରି

ବର୍ତ୍ତଣ ସେ ନଜେ ଏଥିରୁ କଛି ପିଇଲା । ନଶା ଲଗିବାରୁ ତାର ମାଂସ ଖାଇବାକୁ ଇଚ୍ଛା ହେଲା । ଗଛମୂଳରେ ଯେଉଁ ପକ୍ଷୀମାନେ ଶୋଇ' ପଡ଼ିଥିଲେ, ସେଥିରୁ କେତୋଟି ଆଣି ପୋଡ଼ି ସେ ମାଂସ ଖାଇଲା । ତାର ମନରେ ଖୁବ୍ ଆନନ୍ଦ ଆସିଲା । ଏହାପରେ ପକ୍ଷୀମାଂସ ଖାଇ ଓ ଗଛର ଗର୍ତ୍ତରୁ ପାଣି ପିଇ ସେ ଦୁଇ ତନ ଦନ ଖୁବ୍ ଆନନ୍ଦରେ କଟାଇଲା ।

ଏହି ଗଛଠାରୁ କଛି ଦୂରରେ ଜଣେ ସାଧୁ ବାସ କରୁଥିଲେ । ତାଙ୍କର ନାମ ବରୁଣ । ଆଦବାସୀ ଲୋକଟି ବେଳେ ବେଳେ ଏହି ସାଧୁଙ୍କୁ ଦର୍ଶନ କରବାକୁ ଯାଉଥିଲା । ଦନେ ସେ ଭାବଲା—ଗଛର ଗର୍ତ୍ତରେ ଥିବା ପାଣି ପିଇଲେ ମୋର ଏତେ ଆନନ୍ଦ ହେଉଅଛି । ଏଥିରୁ କଛି ନେଇ ସାଧୁଙ୍କୁ ଦେବ । ଏହା ଭାବି ଦନେ ସେ କଛି ସିଦ୍ଧ ମାଂସ ଓ ଗୋଟିଏ ପାତ୍ରରେ ସେହି ଜଳରୁ କଛି ନେଇ ସାଧୁଙ୍କ କୁଡ଼ିଆ ପାଖରେ ପହଞ୍ଚି କହଲା, "ମହାଭାଗ, ମୁଁ ଆପଣଙ୍କ ପାଇଁ କଛି ମାଂସ ଓ ଏକ ବଚିତ୍ର ପାନୀୟ ଆଣିଛି । ଏହି ପାନୀୟର ଗୁଣ ଦେଖନ୍ତୁ । ଦୁହେଁଯାକ କଛି କଛି ମାଂସ ଖାଇ ସେହି ଜଳକୁ ପିଇଲେ । ସାଧୁ ଏହି ଜଳର ଗୁଣରେ ମୁଗ୍ଧ ହୋଇ-ଗଲେ । ସୁର ଏହାକୁ ଆବିଷ୍କାର କରିଥିବାରୁ ଏହାର ନାମ ହେଲା ସୁରା । ବରୁଣ ମୁନ ଏହାକୁ ଆଦରରେ ଗ୍ରହଣ କରିଥିବାରୁ ଏହାର ଅପର ନାମ ହେଲା ବାରୁଣୀ । ସେ ଦୁହେଁ ଗୋଟିଏ ପାତ୍ରରେ ଏହି ସୁରା ପୂର୍ଣ୍ଣ କରି ତାହାକୁ ନେଇ ଏକ ଗ୍ରାମରେ ପହଞ୍ଚିଲେ । ସେଠାରେ ରହି ସେମାନେ ରାଜାଙ୍କ ନିକଟକୁ ସମ୍ବାଦ ପଠାଇଲେ, "ଆମେ ଦୁଇ ଜଣ ବ୍ୟବସାୟୀ, ସୁରା ବୋଲି ଏକ ଅପୂର୍ବ ପାନୀୟ ଆଣି ଆସିଛୁ ।" ରାଜା ସେ ଦୁହିଁଙ୍କୁ ଡକାଇ ପଠାଇଲେ । ତହୁଁ ସେମାନେ ସେହି ସୁରାରୁ କଛି ରାଜାଙ୍କୁ ପିଇବାକୁ ଦେଲେ । ରାଜା ତାହାକୁ ପିଇବାରୁ ନଶାରେ ଭୋଳ ହୋଇ-ଗଲେ । ଏହାପରେ ତନ ଚାରି ଥର ପିଇବା ପରେ ରାଜାଙ୍କର ଆହୁରି ସୁରା ପିଇବାକୁ ଇଚ୍ଛା ହେଲା । କନ୍ତୁ ସେମାନେ ଯେତକ ସୁରା ଆଣିଥିଲେ, ତାହା ସରିଯାଇଥିଲା । ତହୁଁ ରାଜା ପଚାରିଲେ, "ତୁମର ଏହି ଅଦ୍ଭୁତ ପାନୀୟ

ଆହୁରି ଦରକାର । କେଉଁଠାରୁ ଏହା ମିଳି ପାରିବ ?" ସେମାନେ ଉତ୍ତର କଲେ, "ଏଠାରୁ ବହୁ ଦୂରରେ ହିମାଳୟର ଗୋଟିଏ ସ୍ଥାନରେ ଏହା ମିଳେ । ଆଦେଶ ଦେଲେ ଆମ୍ଭେମାନେ ସେଠାକୁ ଯାଇ ଆପଣଙ୍କ ପାଇଁ ନେଇ ଆସିବୁ ।"

ସେମାନେ ତିନି ଚାରିଥର ଯାଇ ହିମାଳୟରୁ ସୁରା ଆଣି ରାଜାଙ୍କୁ ଦେଲେ । ରାଜା ସେମାନଙ୍କ ଉପରେ ସନ୍ତୁଷ୍ଟ ହୋଇଗଲେ । କିନ୍ତୁ ଏତେ ଦୂରକୁ ଯାଇ ଥରକୁ ଥର ସୁରା ଆଣିବା କଠିନ ବ୍ୟାପାର । ତେଣୁ କିପରି ସେହିଠାରେ ରହି ସୁରା ପ୍ରସ୍ତୁତ କରାଯାଇ ପାରିବ ତାହା ସେମାନେ ଚିନ୍ତା କରିବାକୁ ଲାଗିଲେ । ସେମାନେ ସୁରାର ବିଭିନ୍ନ ଉପାଦାନ ସଂଗ୍ରହ କଲେ । ସେହି ଗଛର ଛେଲି, ଜଳ, ଗୋଲମରିଚ, ଅଁଳା, ତ୍ରିଫଳ ପ୍ରଭୃତି ସଂଗୃହୀତ ହେଲା । ସୂର୍ଯ୍ୟକିରଣ ପରିବର୍ତ୍ତରେ ଏ ଗୁଡ଼ିକୁ ଅଗ୍ନିରେ ସିଦ୍ଧ କରାଗଲା । ଏହାପରେ ଯେଉଁ ପାନୀୟ ପ୍ରସ୍ତୁତ ହେଲା ତାହାକୁ ପିଇବାରୁ ନିଶା ହେଲା । କ୍ରମେ ରାଜାଙ୍କ ପାରି, ମନ୍ତ୍ରୀ, କର୍ମଚାରୀ, ଏପରିକି ସାଧାରଣ ଲୋକେ ସୁରା ପିଇବାକୁ ଲାଗିଲେ । ଏହା ଫଳରେ ସେମାନେ ନିଶାରେ ମାତି ଅଳସୁଆ ହୋଇଗଲେ । ଲୋକଙ୍କର ଦେହରୁ କାମ କରିବାର ଶକ୍ତି ଲୋପ ପାଇଗଲା । ସହର କ୍ରମେ ଜନଶୂନ୍ୟ ହୋଇଆସିଲା । ତହୁଁ ସେ ଦୁହେଁ ସେଠାରେ ସୁରା ବ୍ୟବସାୟ ବନ୍ଦ କରିଦେଇ ବାରାଣସୀକୁ ପଳାଇ ଆସିଲେ । ଏଠାରେ ମଧ୍ୟ ସେମାନେ ରାଜାଙ୍କୁ ପ୍ରଲୋଭିତ କରି ତାଙ୍କଠାରୁ ଅର୍ଥ ସାହାଯ୍ୟ ପାଇ ମଦ୍ୟ ପ୍ରସ୍ତୁତ କରିବାକୁ ଲାଗିଲେ । କିଛି କାଳ ମଧ୍ୟରେ ଏଠାରେ ଲୋକେ ମଦ୍ୟ ପ୍ରତି ଆସକ୍ତ ହୋଇ ଅଳସ ଓ ଦୁର୍ବଳ ହୋଇଗଲେ । ଲୋକଙ୍କର ଆର୍ଥିକ ଅବସ୍ଥା ନିତାନ୍ତ ମନ୍ଦ ହୋଇପଡ଼ିଲା । ଏହା ଦେଖି ସେ ଦୁହେଁ ବାରାଣସୀ ତ୍ୟାଗ କରି ସାକେତ ନଗରକୁ ପଳାଇଲେ । ସେଠାରେ କିଛି ଦିନଯାଏ ସେମାନଙ୍କର ବ୍ୟବସାୟ ଭଲ ଚାଲିଲା । କିନ୍ତୁ କ୍ରମେ ଲୋକମାନେ ମଦ୍ୟର ଅପକାରିତା ବୁଝିପାରି ସେମାନଙ୍କର ବିରୋଧୀ ହୋଇ ଉଠିଲେ । ତହୁଁ ସେମାନେ ଶ୍ରାବସ୍ତୀକୁ ଚାଲିଗଲେ । ସେତେବେଳେ ସବମିତ୍ର

ନାମରେ ଜଣେ ରଜା ଶ୍ରାବସ୍ତୀରେ ରହି ରାଜ୍ୟଶାସନ କରୁଥିଲେ । ସେମାନେ ନାନା ଉପାୟରେ ରଜାଙ୍କର ଅନୁଗ୍ରହ ଲାଭ କରି ତାଙ୍କଠାରୁ ମଦ୍ୟ ଉତ୍ପାଦନର ପ୍ରଧାନ ଉପକରଣମାନ ସଂଗ୍ରହ କଲେ । ସେମାନେ ପ୍ରଚୁର ପରିମାଣରେ ମଦ୍ୟ ପ୍ରସ୍ତୁତ କରି ପାଞ୍ଚହି ପାତ୍ରରେ ଭର୍ତ୍ତିକଲେ ଓ ପ୍ରତି ମଦ୍ୟପାତ୍ର ନିକଟରେ ଗୋଟିଏ ଲେଖାଏଁ ଷଣ୍ଢ଼ ବାନ୍ଧିରଖିଲେ । ପାତ୍ରରୁ ଝରିଥିବା ମଦ୍ୟକୁ ପିଇ ଷଣ୍ଢ଼ମାନେ ଅଚେତ ହୋଇ ପଡ଼ିଲେ । ଏହି ଅବସରରେ ମୂଷାମାନେ ଆସି ଷଣ୍ଢ଼ମାନଙ୍କୁ କାମୁଡ଼ିବାକୁ ଲାଗିଲେ । ରଜାଙ୍କ କର୍ମଚାରୀମାନେ ଏହି ଘଟନା ରଜାଙ୍କୁ ଜଣାଇବାରୁ ସେ ଆଦେଶ ଦେଲେ, "ଏ ବିଦେଶୀ ଦୁଇ ଜଣ ଗୋଟାଏ ବିଷାକ୍ତ ଜିନିଷ ତିଆରି କରି ଲୋକମାନଙ୍କୁ ମାରିବା ଉଦ୍ୟମ କରୁଥିଲେ । ଏମାନଙ୍କୁ ଶୂଳୀ ଦିଅ । ଏମାନଙ୍କର ପାଞ୍ଚହି ପାତ୍ରକୁ ଭାଙ୍ଗି ସେଥିରେ ଥିବା ଜଳୀୟ ପଦାର୍ଥକୁ ନଷ୍ଟ କରିଦିଅ ।"

ରଜାଙ୍କ ଆଦେଶ ଅନୁସାରେ ସେ ଦୁହିଁଙ୍କୁ ଶୂଳୀ ଦିଆଗଲା । କିଛି ସମୟ ପରେ ଷଣ୍ଢ଼ମାନଙ୍କ ନିଶା ଛାଡ଼ିଯିବାରୁ ସେମାନେ ଉଠି ପଡ଼ି ଡେଇଁବାକୁ ଲାଗିଲେ । ଲୋକେ ରଜାଙ୍କୁ ଜଣାଇଲେ, "ମହାରାଜ, ଷଣ୍ଢ଼ମାନେ ମରି ନଥିଲେ; ଅଚେତ ହୋଇ ମଲା ପରି ପଡ଼ିଥିଲେ । ଏବେ ସେମାନେ ଆନନ୍ଦରେ ଡେଉଁଛନ୍ତି ।" ରଜା କହିଲେ, "ତେବେ ସେମାନେ ପାତ୍ରରେ ଯାହା ତିଆରି କରି ରଖିଥିଲେ, ତାହା କୌଣସି ବିଷାକ୍ତ ଦ୍ରବ୍ୟ ନୁହେଁ । ତାହା ହୋଇଥିଲେ, ଷଣ୍ଢ଼ମାନେ ମରିଯାଇଥାନ୍ତେ । ଅତଏବ ଆମେ ନିଜେ ଏହାକୁ ପିଇ ଏହାର ଗୁଣ ପରୀକ୍ଷା କରି ଦେଖିବୁ ।"

ଏହି ମଦ୍ୟପାନ ନିମନ୍ତେ ଗୋଟିଏ ଦିନ ନିର୍ଦ୍ଧାରିତ ହେଲା । ସେଦିନ ରାଜପୁରୀ ସୁସଜ୍ଜିତ କରାଗଲା । ରାଜପ୍ରାସାଦର ଏକ ସୁଶୋଭିତ ମଣ୍ଡପ ଉପରେ ସ୍ୱର୍ଣ୍ଣ ସିଂହାସନରେ ରଜା ଉପବେଶନ କଲେ । ତାଙ୍କ ମସ୍ତକ ଉପରେ ଶ୍ୱେତ ଛତ୍ର ଶୋଭା ପାଉଥିଲା । ଉଚ୍ଚ କର୍ମଚାରୀମାନେ ନିଜ ନିଜ ପଦବୀ ଅନୁସାରେ ଆସନ ଗ୍ରହଣ କଲେ । ମଦ୍ୟପାତ୍ର ଅଣାଗଲା । ରଜା

ମଦ୍ୟପାନ କରିବାକୁ ଉଦ୍ୟତ ହେଉଅଛନ୍ତି, ଏହି ସମୟରେ ଏକ ବିଚିତ୍ର ଘଟନା ଘଟିଲା ।

ଦେବରାଜ ଶକ୍ର ପୃଥିବୀ ଉପରେ ଦୃଷ୍ଟି ପକାଇ ଦେଖିଲେ, ବାରାଣସୀର ରାଜା ପାରିଷଦମାନଙ୍କ ସହିତ ମଦ ପିଇବାକୁ ଆୟୋଜନ କରୁଅଛନ୍ତି । ସେ ଭାବିଲେ, "ରାଜା ଓ ତାଙ୍କର ସଭାସଦମାନେ ମଦ ପିଇଲେ, ନଗରର ଲୋକେ ମଦ ପିଇବେ । ତାଙ୍କୁ ଅନୁକରଣ କରି ଅନ୍ୟାନ୍ୟ ଦେଶର ଲୋକେ ତାହାହିଁ କରିବେ । ଫଳରେ ସମଗ୍ର ଭାରତବର୍ଷର ସର୍ବନାଶ ଘଟିବ । ତାଙ୍କୁ ଏହି କୁକର୍ମରୁ ବିରତ କରିବା ଉଚିତ ।"

ଏହିପରି ଚିନ୍ତାକରି ଶକ୍ର ବୃଦ୍ଧ ବ୍ରାହ୍ମଣବେଶ ଧାରଣ କଲେ ଓ ଗୋଟିଏ ମଦ୍ୟଭାଣ୍ଡ ହାତରେ ଧରି ଶୂନ୍ୟରେ ରହି ରାଜାଙ୍କ ଆଗରେ ଆବିର୍ଭୂତ ହେଲେ । ସେ କହିଲେ, "ମୋର ଏହି ପାତ୍ରକୁ କିଣିନିଅ ।" ଜଣେ ବୃଦ୍ଧ ବ୍ରାହ୍ମଣ ଶୂନ୍ୟରେ ରହି ଏପରି କହୁଥିବାର ଶୁଣି ରାଜା ନିତାନ୍ତ ବିସ୍ମିତ ହୋଇ କହିଲେ, "ମହାଭାଗ, ଆପଣ କିଏ ? ଆପଣଙ୍କ ଶରୀରରୁ ଦିବ୍ୟଜ୍ୟୋତି ବାହାରୁଛି । ଆପଣ ଶୂନ୍ୟରେ ରହିଅଛନ୍ତି । ତେଣୁ ଆପଣ ନିଶ୍ଚୟ ଦେବଅଂଶରେ ଜାତ, କଦାପି ସାଧାରଣ ମନୁଷ୍ୟ ନୁହନ୍ତି । ଅନୁଗ୍ରହ କରି ଆପଣଙ୍କ ପରିଚୟ ଦିଅନ୍ତୁ । ଏ ପାତ୍ରରେ କଅଣ ଅଛି, କହନ୍ତୁ । କାହିଁକି ଆପଣ ତାକୁ ମୋତେ ବିକ୍ରୟ କରିବାକୁ କହୁଅଛନ୍ତି ?"

ଶକ୍ର ଉତ୍ତର କଲେ, "ହେ ରାଜା, ଏ ପାତ୍ରଟିରେ ଘୃତ, ତୈଳ ବା ମଧୁ ନାହିଁ । ଏଥିରେ ଜଗତର ଯାବତୀୟ ପାପ, ଅନ୍ୟାୟ, ଅଧର୍ମ ପୂରି ରହିଅଛି । ଏହି ପାପପାତ୍ରକୁ ସେବନ କଲେ ପତନ ଅନିବାର୍ଯ୍ୟ । ଯିଏ ଏହାକୁ ପାନ କରିବ, ସେ ଧର୍ମ ଓ ନ୍ୟାୟପଥରୁ ବିଚ୍ୟୁତ ହୋଇ ନିଜର ସର୍ବନାଶ ଘଟାଇବ । ଏହାକୁ ପାନ କରି କେତେ ରାଜା ମହାରାଜା ଦେଶର ସର୍ବନାଶ କରି ଶେଷରେ ନରକଗାମୀ ହୋଇଅଛନ୍ତି । ଏହାରି ଯୋଗୁ ଦେଶରେ କେତେ ଯୁଦ୍ଧ ହୋଇଯାଇଛି । ଅସୁରମାନେ ଏହାକୁ ପାନ କରି

ସ୍ୱର୍ଗରାଜ୍ୟରୁ ସ୍ଖଳିତ ହୋଇଥିଲେ । ଏହି ପାମ୍ପୟର ନାମ ସୁରା । ଏବେ ଏହାର ଗୁଣ ଜାଣି ଯେବେ ଇଚ୍ଛା କର, ତେବେ ଏହାକୁ ନେଇ ପାନ କର ।”

ଶକ୍ରଙ୍କର ଏହି ଉକ୍ତିରେ ରାଜାଙ୍କର ମନ ପରିବର୍ତ୍ତିତ ହୋଇଗଲା । ସେ ମଦ୍ୟପାନ କରିବାର ଅଭିଳାଷ ତ୍ୟାଗ କରି କହିଲେ, “ହେ ବ୍ରାହ୍ମଣ; ଆପଣଙ୍କର ମୋ ପ୍ରତି ଅସୀମ ଦୟା । ଆପଣଙ୍କଠାରୁ ମୁଁ ମହାନ୍ ଉପଦେଶ ପାଇଛି । ମୁଁ ଜୀବନରେ କେବେହେଲେ ମଦ୍ୟ ସ୍ପର୍ଶ କରିବି ନାହିଁ ବୋଲି ପ୍ରତିଜ୍ଞା କରୁଛି । ଆପଣଙ୍କର ଏହି ବହୁମୂଲ୍ୟ ଉପଦେଶ ନିମନ୍ତେ ମୁଁ ଆପଣଙ୍କୁ ପାଞ୍ଚଟି ଗ୍ରାମ, ପାଞ୍ଚଶତ ଦାସୀ, ସାତଶହ ଗାଭୀ ଓ ଦଶଟି ରଥ ଦାନ କରୁଅଛି ।”

ବ୍ରାହ୍ମଣରୂପୀ ଶକ୍ର କହିଲେ, “ରାଜା, ମୁଁ ତୁମର ଦାନ ଗ୍ରହଣ କରିବାକୁ ଇଚ୍ଛୁକ ନୁହେଁ । ତୁମେ ଯେ ମଦ୍ୟପାନ କରିବ ନାହିଁ ବୋଲି ପ୍ରତିଜ୍ଞା କରିଛ, ତାହାହିଁ ମୋର ଯଥେଷ୍ଟ ପୁରସ୍କାର । ମୁଁ ହେଉଛି ଦେବରାଜ ଶକ୍ର । ମୁଁ ତୁମର ଗ୍ରାମ, ଦାସଦାସୀ, ଗାଭୀ, ରଥ ପ୍ରଭୃତି ନେଇ କଅଣ କରିବି ?”

ଏହାପରେ ଶକ୍ର ନିଜ ରୂପ ଧାରଣ କରି ସ୍ୱର୍ଗକୁ ପ୍ରସ୍ଥାନ କଲେ । ରାଜା ଦେଶରେ ମଦ୍ୟପାନ ନିଷେଧ କରି ଆଦେଶ ପ୍ରଚାର କଲେ । ସମସ୍ତ ମଦ୍ୟପାତ୍ର ନଷ୍ଟ କରି ଦିଆଗଲା ।

ରାଜା ଦାନଧର୍ମରେ ଜୀବନ କଟାଇ ଶେଷରେ ସ୍ୱର୍ଗରାଜ୍ୟରେ ସ୍ଥାନ ପାଇଲେ ।

# ଭୀଷ ପୁଷ୍ପ ଜାତକ

ଏକ ଜନ୍ମରେ ବ୍ରହ୍ମଦତ୍ତ ବାରଣସୀ ରାଜ୍ୟରେ ରାଜତ୍ୱ କରୁଥିବାବେଳେ ବୋଧିସତ୍ତ୍ୱ ସେହି ରାଜ୍ୟର କୌଣସି ବ୍ରାହ୍ମଣ ପରିବାରରେ ଜନ୍ମିଥିଲେ । ଯଥା ସମୟରେ ସେ ତକ୍ଷଶିଳାକୁ ଯାଇ ସେଠାରେ ଉପଯୁକ୍ତ ଗୁରୁଙ୍କ ଠାରୁ ଶିକ୍ଷା ଲାଭକରି ସକଳଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କଲେ । ଶିକ୍ଷା ସମାପ୍ତ ହେବାରୁ ସେ ସ୍ୱଗ୍ରାମକୁ ଫେରି ଆସିଲେ; କିନ୍ତୁ ସଂସାରର ଅନିତ୍ୟତା ବୁଝି ପାରି ସେ ପରିବାର ତ୍ୟାଗ କରି ସନ୍ୟାସ ଗ୍ରହଣ କଲେ । ସେ ଗୋଟିଏ ପୁଷ୍କରିଣୀ ତୀରରେ କୁଟୀର ନିର୍ମାଣ କରି ସେଥିରେ ବାସ କରୁଥିଲେ ଓ ଭିକ୍ଷାଲବ୍ଧ ଅନ୍ନଦ୍ୱାରା ଜୀବନଯାତ୍ରା ନିର୍ବାହ କରୁଥିଲେ । ପୁଷ୍କରିଣୀଟିରେ ପଦ୍ମଫୁଲ ପୂର୍ଣ୍ଣ ହୋଇଥିବାରୁ ଏହା ଅତ୍ୟନ୍ତ ମନୋହର ଦିଶୁଥିଲା ।

ଦିନେ ବୋଧିସତ୍ତ୍ୱ ପୁଷ୍କରିଣୀରେ ପ୍ରବେଶ କରି ଗୋଟିଏ ପ୍ରସ୍ଫୁଟିତ ପଦ୍ମପୁଷ୍ପର ସୁଗନ୍ଧ ଆଘ୍ରାଣ କରୁଥିଲେ । ପୁଷ୍କରିଣୀର ଏକ ପ୍ରାନ୍ତରେ ଗଛର ମଧରେ ଏହାର ଅଧିଷ୍ଠାତ୍ରୀ ଦେବୀ ରହିଥିଲେ । ବୋଧିସତ୍ତ୍ୱ ପୁଷ୍ପର ଗନ୍ଧ ଆଘ୍ରାଣ କରୁଥିବାର ଦେଖି ତାହାଙ୍କୁ ଉପଦେଶ ଦେବା ଉଦ୍ଦେଶ୍ୟରେ କହିଲେ; "ହେ ସନ୍ୟାସି, ତୁମେ ଏପରି ଅନ୍ୟାୟ କାର୍ଯ୍ୟ କରୁଛ କପରି ? ପୁଷ୍ପର ସୁଗନ୍ଧ ଆଘ୍ରାଣ କରିବାକୁ କିଏ ତୁମକୁ ଅନୁମତି ଦେଲା ? ଗୋଟିଏ ମାତ୍ର ଫୁଲର ସୁଗନ୍ଧ ତୁମେ ଆଘ୍ରାଣ କରିଛ ସତ୍ୟ; ତଥାପି ଏହା ଏକ ପ୍ରକାର ଚୌର୍ଯ୍ୟ । ଏ ପୁଷ୍କରିଣୀର ପୁଷ୍ପ ତୁମର ନୁହେଁ । ତେଣୁ ତୁମେ ଚୌର୍ଯ୍ୟ ଅପରାଧରେ ଅପରାଧୀ ।"

ବୋଧିସତ୍ତ୍ୱ ଉତ୍ତର କଲେ; "ହେ ଦେବି ! ମୁଁ ଫୁଲଟି ନେଇ ଯାଇ-ନାହିଁ; ଏହାକୁ ଛିଣ୍ଡାଇ ନଷ୍ଟ କରିଦେଇ ନାହିଁ । ମୁଁ ଦୂରରେ ରହି କେବଳ ଏହାର ମଧୁର ଗନ୍ଧକୁ ଆଘ୍ରାଣ କରିଛି ମାତ୍ର । ଏପରି ସ୍ଥଳେ ଆପଣ କପରି କହୁଛନ୍ତି ଯେ ମୁଁ ଚୌର୍ଯ୍ୟ ଅପରାଧରେ ଦୋଷୀ ।"

ଏତିକବେଳକୁ ଜଣେ ପୁଷ୍କରିଣୀରେ ପ୍ରବେଶ କରି ପଦ୍ମଲତାକୁ ଉପାଡ଼

ତାହାର ମୂଳକୁ ସଂଗ୍ରହ କରିବାରେ ଲଗିଲା । ତାହାକୁ ଦେଖି ବୋଧିସତ୍ତ୍ୱ ପୁଣି କହିଲେ, "ହେ ଦେବ, ମୁଁ ଦୂରରୁ ଗୋଟିଏ ଫୁଲର ସୁଗନ୍ଧ ଆଘ୍ରାଣ କଲି ବୋଲି ଆପଣ ମୋତେ ଚୋର ବୋଲି କହୁଛନ୍ତି; ଅଥଚ ଏହି ଲୋକଟି ଏତେଗୁଡ଼ିଏ ପଦ୍ମଗଛ ନଷ୍ଟ କରି ସେଗୁଡ଼ିକର ମୂଳ ନେଉଥିଲେ ମଧ୍ୟ ତାକୁ କିଛି କହୁନାହାନ୍ତି । ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ !"

ଦେବୀ ଉତ୍ତର କଲେ, "ଏ ଲୋକଟିର କାର୍ଯ୍ୟ ଯେ ନିତାନ୍ତ ଘୃଣ୍ୟ ଓ ଦୋଷାବହ, ସେଥିରେ ସନ୍ଦେହ ନାହିଁ । ଏହାରି ପରି ଲକ୍ଷ ଲକ୍ଷ ଲୋକ ଜଗତରେ ଅଛନ୍ତି । କିନ୍ତୁ ସେଭଳି ଲୋକଙ୍କୁ କିଛି ଉପଦେଶ ଦେଇ କହିବାକୁ ମୁଁ ଉଚିତ ମନେ କରେ ନାହିଁ । କିନ୍ତୁ ତୁମ ପରି ଧାର୍ମିକ ପୁରୁଷଙ୍କୁ ଉପଦେଶ ଦେବା କର୍ତ୍ତବ୍ୟ ବୋଲି ମୁଁ ବିବେଚନା କରେଁ । ନିର୍ମଳ ଆକାଶରେ ଖଣ୍ଡିଏ କଳାମେଘ ଦେଖାଦେଲେ ତାହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । ସେହିପରି ତୁମର ପବିତ୍ର ଓ ନିଷ୍କଳଙ୍କ ଜୀବନରେ ଲବମାତ୍ର କାଳିମା ଦେଖି ମୁଁ ତୁମକୁ ଉପଦେଶ ଦେବାପାଇଁ ଏହା କହୁଅଛି ।"

ବୋଧିସତ୍ତ୍ୱ ଦେବୀଙ୍କର ଉଦ୍ଦେଶ୍ୟ ବୁଝିପାରି ନିତାନ୍ତ ଅନୁତପ୍ତ ଓ ଲଜ୍ଜିତ ହୋଇ କହିଲେ, "ହେ ଦେବ ! ଆପଣଙ୍କର ଉପଦେଶ ଶିରୋଧାର୍ଯ୍ୟ । ମୁଁ ବନାନ୍ତରେ ଫୁଲଟିର ସୁଗନ୍ଧ ଆଘ୍ରାଣ କରି ଅନ୍ୟାୟ କରିଅଛି; ଏହା ଏକ ପ୍ରକାର ଚୌର୍ଯ୍ୟ ବୋଲି ମୁଁ ସ୍ୱୀକାର କରୁଅଛି । ଆପଣ ଦୟାକରି ମୋତେ ପାପ ପଥରୁ ଫେରାଇ ଆଣିଅଛନ୍ତି । ଯଦି ମୁଁ କେବେ ଏହିପରି କୌଣସି ଅନ୍ୟାୟ କାର୍ଯ୍ୟ କରେ, ତେବେ ଦୟାକରି ମୋତେ ସାବଧାନ କରିଦେବେ ।"

ବୋଧିସତ୍ତ୍ୱ ସେହିଦିନଠାରୁ ନିଜର କାର୍ଯ୍ୟ ପ୍ରତି ତୀକ୍ଷ୍ଣ ଦୃଷ୍ଟିରଖି ଚଳିଲେ । ପବିତ୍ର ନିଷ୍କଳଙ୍କ ଜୀବନଯାପନ କରିବା ହେତୁରୁ ସେ ପରଜନ୍ମରେ ବ୍ରହ୍ମଲୋକରେ ସ୍ଥାନ ପାଇଲେ ।

# କଷ୍ଟହାରୀ ଜାତକ

ଥରେ ବାରଣସୀର ରାଜା ବ୍ରହ୍ମଦତ୍ତ ବନଭ୍ରମଣ କରିବାକୁ ଯାଇଥିଲେ । ତାଙ୍କ ସହିତ ଅନେକ ଅନୁଚର ମଧ୍ୟ ଯାଇଥିଲେ । ବନ ମଧ୍ୟରେ ଫଳପୁଷ୍ପ ସଂଗ୍ରହ କରି ବୁଲୁ ବୁଲୁ ରାଜା ଏକ ସ୍ଥାନରେ ଦେଖିଲେ ଯେ ଗୋଟିଏ ସୁନ୍ଦରୀ ଯୁବତୀ କାଠ ସଂଗ୍ରହରେ ଲାଗିଅଛି ଓ ତାହା ସଙ୍ଗେ ସଙ୍ଗେ ମଧୁର ସ୍ୱରରେ ଗୋଟିଏ ଗୀତ ଗାଉଅଛି । ତାହାର ସୌନ୍ଦର୍ଯ୍ୟ ଦେଖି ଓ ମଧୁର ଗୀତ ଶୁଣି ରାଜା ଏକାବେଳେ ଆତ୍ମହରା ହୋଇପଡ଼ିଲେ ଓ ସଙ୍ଗେ ସଙ୍ଗେ ତାହାକୁ ପତ୍ନୀ ରୂପରେ ଗ୍ରହଣ କଲେ । ବନମଧ୍ୟରେ ଏକାନ୍ତରେ ଦୁହିଁଙ୍କର ମିଳନ ହେଲା ଓ ଗାନ୍ଧର୍ବ ବିଧିରେ ଦୁହିଁଙ୍କର ବିବାହ ହୋଇଗଲା । ସେ ଗର୍ଭବତୀ ହୋଇ ଥିବାର ଜଣାଇବାରୁ ରାଜା ତାହାକୁ ସ୍ୱନାମାଙ୍କିତ ସ୍ୱର୍ଣ୍ଣମୁଦ୍ରିକାଟି ଦେଇ କହିଲେ, "ଯଦି ତୁମର କନ୍ୟା ସନ୍ତାନ ଜାତ ହୁଏ, ତେବେ ଏହି ମୁଦ୍ରିକାଟି ବିକ୍ରି କରି ତାର ଲାଳନପାଳନରେ ବ୍ୟୟ କରିବ । କିନ୍ତୁ ଯଦି ପୁତ୍ରସନ୍ତାନ ହୁଏ, ତାହାହେଲେ ମୁଦ୍ରିକା ସହିତ ସନ୍ତାନଟିକୁ ନେଇ ମୋ ପାଖକୁ ଯିବ ।"

ଯଥା ସମୟରେ ବୋଧିସତ୍ତ୍ୱ ଏହି ରମଣୀର ସନ୍ତାନରୂପେ ଜନ୍ମଗ୍ରହଣ କଲେ । ଶିଶୁପୁତ୍ରଟି ଦିନକୁ ଦିନ ବଢ଼ିବାକୁ ଲାଗିଲେ । କ୍ରମେ ସେ ଏଣେ ତେଣେ ବୁଲି ବନବାସୀ ଅନ୍ୟ ବାଳକମାନଙ୍କ ସହିତ କ୍ରୀଡ଼ାକୌତୁକରେ ଯୋଗ ଦେଲେ । ଦିନେ ଜଣେ କ୍ରୀଡ଼ାସଙ୍ଗୀ ତାଙ୍କୁ ଅଜଣାବାପୁଆ କହି ଉପହାସ କଲା । ତହୁଁ ସେ ଘରକୁ ଯାଇ ମାଆକୁ ପଚାରିଲେ, "ମାଆ, ପିଲାମାନେ ମୋତେ ଅଜଣାବାପୁଆ କହି ଥଟ୍ଟା କରୁଛନ୍ତି । ମୋର ବାପା କିଏ ?" ମାଆ ଉତ୍ତର କଲେ, "ତୁ ଅଜଣାବାପୁଆ ହେବୁ କାହିଁକି ? ବାରଣସୀର ରାଜା ହେଉଛନ୍ତି ତୋର ବାପା । ସେ ଥରେ ବଣକୁ ବୁଲି ଆସିଥିଲେ । ସେତିକିବେଳେ ସେ ମୋତେ ବିବାହ କରି ଗୋଟିଏ ମୁଦି ଦେଇ କହିଯାଇଥିଲେ—ଝିଅଟିଏ ଜନ୍ମ ହେଲେ ମୁଦିକୁ ବିକି ତାପାଇଁ ଖରଚ କରିବ; ପୁଅଟିଏ ଜନ୍ମହେଲେ ତାକୁ

ନେଇ ମୁଦ୍ର ସହିତ ମୋ ପାଖକୁ ଆସିବ ।" ଏହା ଶୁଣି ବୋଧିସତ୍ତ୍ୱ କହିଲେ, "ତାହା ହେଲେ ମୋତେ ରାଜାଙ୍କ ପାଖକୁ ନେଇଚାଲ ।"

କାଠୁରିଆ ଯୁବତୀ ବୋଧିସତ୍ତ୍ୱଙ୍କୁ ସଙ୍ଗରେ ନେଇ ବାରଣସୀକୁ ଗଲେ ଓ ରାଜପ୍ରାସାଦର ଦ୍ୱାରଦେଶରେ ପ୍ରହରୀକୁ କହିଲେ, "ଯାଅ, ରାଜାଙ୍କୁ ସମ୍ବାଦ ଦିଅ ଯେ ଜଣେ ସ୍ତ୍ରୀଲୋକ ତାର ପିଲା ସହିତ ତାଙ୍କୁ ଦେଖା କରିବାକୁ ଆସିଅଛି ।"

ସେତେବେଳକୁ ରାଜା ପାତ୍ରମନ୍ତ୍ରୀଙ୍କ ସହିତ ଦରବାରରେ ବସିଥିଲେ । ପ୍ରହରୀ ରାଜାଙ୍କର ଅନୁମତି ଆଣି ବୋଧିସତ୍ତ୍ୱ ଓ ତାଙ୍କ ମାତାଙ୍କୁ ଦରବାରରେ ଉପସ୍ଥିତ କରାଇଲା । ସେମାନଙ୍କ ଆସିବାର କାରଣ ପଚାରିବାରୁ ବୋଧିସତ୍ତ୍ୱଙ୍କ ମାତା କହିଲେ, "ଏ ବାଳକଟି ଆପଣଙ୍କର ପୁତ୍ର । ଏହାକୁ ଗ୍ରହଣ କରନ୍ତୁ ।" ଏହା କହି ରାଜନାମାଙ୍କିତ ମୁଦ୍ରିକାଟି ଦେଖାଇଲେ । ଏବେ ରାଜା ସବୁ ଘଟନା ମନେ ପକାଇଲେ । ସେ ଜାଣିପାରିଲେ ଯେ ଏହି ସ୍ତ୍ରୀଲୋକଟି ତାଙ୍କର ସ୍ତ୍ରୀ ଓ ବାଳକଟି ତାଙ୍କର ପୁତ୍ର । କିନ୍ତୁ ସେ ଭାବିଲେ, ସାମାନ୍ୟ କାଠୁରିଆର ଝିଅକୁ ସେ ବିବାହ କରିଥିଲେ ବୋଲି ଜଣାପଡ଼ିଲେ ତାଙ୍କୁ ଅପମାନ ହେବ । ତେଣୁ ସେ କହିଲେ, "ମୁଁ ତୁମକୁ ଚିହ୍ନେ ନାହିଁ । ଏ ମୁଦ୍ର ମୋର ନୁହେଁ । ଏ ପିଲାକୁ ମୁଁ ପୁତ୍ରରୂପେ ଗ୍ରହଣ କରିପାରିବି ନାହିଁ ।"

ଏହା ଶୁଣି ବୋଧିସତ୍ତ୍ୱଙ୍କ ମାତା ନିତାନ୍ତ ଦୁଃଖିତ ହୋଇ କହିଲେ, "ଆମ ଦୁହିଁଙ୍କର ବିବାହ ବିଷୟ ଆମ ଦୁହିଁଙ୍କ ଛଡ଼ା ଅନ୍ୟ କେହି ଜାଣନ୍ତି ନାହିଁ । ମୁଦ୍ରିକାକୁ ଆପଣ ସ୍ୱୀକାର କରୁନାହାନ୍ତି । ତେଣୁ ଏ ବାଳକକୁ ଫିଙ୍ଗିଦେବି । ଯଦି ଜଗତରେ ସତ୍ୟ ଥାଏ, ଧର୍ମ ଥାଏ, ଏ ବାଳକ ଯଦି ଆପଣଙ୍କର ପୁତ୍ର ହୋଇଥାଏ, ତେବେ ତାର କିଛି ଅନିଷ୍ଟ ହେବ ନାହିଁ । ଯଦି ମୋର ବାକ୍ୟ ମିଥ୍ୟା ହୋଇଥାଏ ତେବେ ସେ ତଳେ ପଡ଼ି ପ୍ରାଣ ହରାଇବ ।" ଏହା କହି ସେ ବାଳକଟିକୁ ଉପରକୁ ଫିଙ୍ଗିଦେଲେ ।

ଆଶ୍ଚର୍ଯ୍ୟର କଥା, ବାଳକଟି ତଳେ ପଡ଼ି ନ ଯାଇ ଶୂନ୍ୟରେ ପଦ୍ମାସନରେ ବସିରହି ରାଜାଙ୍କୁ କହିଲେ, "ମହାରାଜ ! ଯଥାର୍ଥରେ ମୁଁ ତୁମର

ପୁତ୍ର । ତୁମେ ରାଜା, ସତ୍ୟ ଓ ନ୍ୟାୟରେ ପ୍ରଜାମାନଙ୍କୁ ପାଳନ କରିବା ରାଜାର ଧର୍ମ । ସେହିପରି ନିଜର ପତ୍ନୀ ଓ ପୁତ୍ରକୁ ରକ୍ଷା କରିବା ମଧ୍ୟ ରାଜାର କର୍ତ୍ତବ୍ୟ । ତୁମେ ସତ୍ୟଭ୍ରଷ୍ଟ ହେଲେ ନରକଗାମୀ ହେବ ।"

ଏହା ଶୁଣି ରାଜାଙ୍କର ମନ ବଦଳିଗଲା । ରାଜା ଦୁଇହାତ ଉପରକୁ ଟେକି କହିଲେ, "ବତ୍ସ ! ତୁଂ ମୋର ପୁତ୍ର । ମୁଁ ଧର୍ମପଥ ଛାଡ଼ିବାକୁ ବସିଥିଲି । ତୁ ମୋତେ ଉପଯୁକ୍ତ ଶିକ୍ଷା ଦେଇଅଛୁ । ଆ, ମୋ କୋଳକୁ ଆ । ତୋର ଓ ତୋ ମାଆଙ୍କର ରକ୍ଷଣାବେକ୍ଷଣରେ ତ୍ରୁଟି କରିବି ନାହିଁ ।" ବୋଧିସତ୍ତ୍ୱ ଡେଇଁ-ଆସି ରାଜାଙ୍କ କୋଳରେ ବସିଲେ । ରାଜା ତାଙ୍କ ମୁଖ ଚୁମ୍ବନ କଲେ । ପାତ୍ରମନ୍ତ୍ରୀ ଏହି ଘଟନାରେ ବିସ୍ମିତ ହୋଇଗଲେ । ସେମାନେ ରାଜାଙ୍କର ଜୟଗାନ କଲେ ।

ବୋଧିସତ୍ତ୍ୱ ରାଜାଙ୍କ ଦ୍ୱାରା ରାଜପ୍ରତିନିଧି ପଦରେ ନିଯୁକ୍ତ ହେଲେ । କିଛିକାଳ ପରେ ରାଜା ବ୍ରହ୍ମଦତ୍ତଙ୍କର ସ୍ୱର୍ଗପ୍ରାପ୍ତି ହେବାରୁ ବୋଧିସତ୍ତ୍ୱ ସିଂହାସନ ଆରୋହଣ କଲେ । ତାଙ୍କର ମାତା କାଷ୍ଠ ସଂଗ୍ରହ କରି ଜୀବିକା ଅର୍ଜନ କରୁଥିଲେ ବୋଲି ସେ କାଷ୍ଠବାହନ ନାମ ଧାରଣ କଲେ । ରାଜା କାଷ୍ଠବାହନଙ୍କ ଶାନ୍ତିମୟ ରାଜତ୍ୱରେ ବାରାଣସୀର ବିବିଧ ଉନ୍ନତି ସାଧିତ ହେଲା ।

## ତିତ୍ତିର ଜାତକ

ଏକ ଜନ୍ମରେ ବୋଧିସତ୍ତ୍ୱ ଗୋଟିଏ ତିତ୍ତିର ପକ୍ଷୀରୂପେ ଜନ୍ମଗ୍ରହଣ କରିଥିଲେ ଓ ସହସ୍ର ସହସ୍ର ତିତ୍ତିରପକ୍ଷୀଙ୍କର ସର୍ଦ୍ଦାର ହୋଇଥିଲେ । ବୋଧିସତ୍ତ୍ୱ ସେମାନଙ୍କ ସହିତ ଗୋଟିଏ ବନମଧ୍ୟରେ ବାସ କରୁଥିଲେ । ଏହି ବନର ନିକଟବର୍ତ୍ତୀ ଏକ ଗ୍ରାମରେ ଜଣେ ବ୍ୟାଧ ଥିଲା । ତିତ୍ତିର ପକ୍ଷୀମାନଙ୍କୁ

ଧରିବା ପାଇଁ ସେ ଗୋଟିଏ କୌଶଳ କରୁଥିଲା । ବନର କୌଣସି ସ୍ଥାନରେ ଲୁଚିରହି ସେ ତିତିର ପକ୍ଷୀର ରାବ ଅନୁକରଣ କରି ଶବ୍ଦ କରୁଥିଲା । ତାହା ଶୁଣି ତିତିର ପକ୍ଷୀମାନେ ସେହି ଶବ୍ଦକୁ କୌଣସି ତିତିରର ଶବ୍ଦ ବୋଲି ମନେକରି ସେଠାରେ ଏକତ୍ର ହେଉଥିଲେ । ତତ୍ପରେ ବ୍ୟାଧ ହଠାତ୍ ସେମାନଙ୍କ ଉପରକୁ ତାର ଜାଲ ଫିଙ୍ଗି ଦେଉଥିଲା । ଜାଲକୁ ଟାଣିବାରୁ ପକ୍ଷୀମାନେ ଜାଲଭିତରେ ରହିଯାଉଥିଲେ । ତତ୍ପରେ ବ୍ୟାଧ ସେମାନଙ୍କୁ ଧରି ଘରକୁ ନେଉଥିଲା ଓ ସେମାନଙ୍କ ମାଂସ ବିକ୍ରୟ କରି କୁଟୁମ୍ବ ପ୍ରତି-ପୋଷଣ କରୁଥିଲା ।

ଏହିପରି ବ୍ୟାଧ ଅନେକ ପକ୍ଷୀଙ୍କୁ ମାରିବା ଦେଖି ଦିନେ ବୋଧିସତ୍ତ୍ୱ ସେମାନଙ୍କୁ କହିଲେ, "ଏ ବ୍ୟାଧ ଆମ୍ଭମାନଙ୍କ ଭିତରୁ ଅନେକଙ୍କୁ ମାରି ସାରିଲାଣି । ଏହାଠାରୁ ରକ୍ଷା ପାଇବାର ଉପାୟ ସ୍ଥିର କରିବା ଉଚିତ । ମୋ ମତରେ ସମସ୍ତେ ମିଳି ଚେଷ୍ଟାକଲେ ଆମେ ସହଜରେ ରକ୍ଷା ପାଇବା । ବ୍ୟାଧ ଜାଲ ଫିଙ୍ଗିଲା ମାତ୍ରେ ଆମେ ଜାଲର କଣାବାଟେ ମୁଣ୍ଡ ଗଳାଇ ଉପରକୁ ଉଡ଼ି ପଳାଇ ଯିବା । ତାହାପରେ ଜାଲଟିକୁ କୌଣସି କଣ୍ଟା-ବୁଦାରେ ପକାଇଦେଇ ତଳବାଟେ ବାହାରି ଆସିବା ।"

ଏ କୌଶଳଟି ସମସ୍ତଙ୍କ ମନକୁ ପାଇଲା । ତତ୍ପରଦିନ ବ୍ୟାଧ ଜାଲ ଫିଙ୍ଗିବାମାତ୍ରେ ପକ୍ଷୀମାନେ ଏକ ସଙ୍ଗରେ ଜାଲଟିକୁ ଟେକି ଉଡ଼ିଗଲେ । ବ୍ୟାଧ କିଛିଦୂର ସେମାନଙ୍କ ପଛେ ପଛେ ଦଉଡ଼ିଲା; ମାତ୍ର ପକ୍ଷୀମାନେ ସହଜରେ ତାହାଠାରୁ ଦୂରକୁ ଉଡ଼ିଗଲେ । କିଛି ଦୂର ଯିବା ପରେ ସେମାନେ ଜାଲଟିକୁ ଗୋଟିଏ କଣ୍ଟାବୁଦାରେ ପକାଇଦେଲେ ଓ ଜାଲର ତଳବାଟେ ବାହାରି ଉଡ଼ିଗଲେ । କିଛି ସମୟ ପରେ ବ୍ୟାଧ ସେହି ବୁଦା ପାଖରେ ପହଞ୍ଚି ଜାଲଟିକୁ ନେବାକୁ ବସିଲା । କିନ୍ତୁ ଜାଲ ଅନେକ ଜାଗାରେ କଣ୍ଟା-ବୁଦାରେ ବନ୍ଧ ହୋଇଯାଇଥିଲା । ସେଥିରୁ ଫିଟାଇ ଜାଲକୁ ବାହାର କଲା-ବେଳକୁ ସନ୍ଧ୍ୟା । ତେଣୁ ସେ ବାଧ ହୋଇ ଜାଲଟି ନେଇ ଶୂନ୍ୟ ହାତରେ ଘରକୁ ଫେରିଗଲା ।

ଏହିପରି ତିନି ଗୁରିଦିନ ଯାଏ ବ୍ୟାଧ ଯେତେ ଚେଷ୍ଟା କଲେ ସୁଦ୍ଧା ଗୋଟିଏ ହେଲେ ପକ୍ଷୀ ଧରିପାରିଲା ନାହିଁ । ପ୍ରତିଦିନ ସେ ପକ୍ଷୀମାନଙ୍କ ଉପରେ ଜାଲ ଫିଙ୍ଗେ, ପକ୍ଷୀମାନେ ଜାଲକୁ ନେଇ ଗୋଟାଏ କଣ୍ଟାବୁଦା ଉପରେ ପକାଇଦେଇ ବାହାରି ଯାଆନ୍ତି; ବ୍ୟାଧ ବହୁ କଷ୍ଟରେ ଜାଲ ଫିଟାଇ ଖାଲି ହାତରେ ଘରକୁ ଫେରେ ।

ବ୍ୟାଧ ପ୍ରତିଦିନ ଶୂନ୍ୟ ହାତରେ ଫେରିବାର ଦେଖି ତାର ସ୍ତ୍ରୀ କହିଲା, "ଏବେ କଅଣ ତୁମେ ଗୋଟିଏ ହେଲେ ପକ୍ଷୀ ଧରି ପାରୁନାହଁ ? ମୋର ସନ୍ଦେହ ହେଉଛି, ତୁମେ ଆଉ ଗୋଟିଏ ସ୍ତ୍ରୀ ରଖିଛ । ତାରି ପାଖରେ ସବୁ ପକ୍ଷୀ ଦେଇ ଖାଲି ହାତରେ ଘରକୁ ଆସୁଛ ।" ବ୍ୟାଧ ସ୍ତ୍ରୀକୁ ସବୁ ପ୍ରକୃତ ଘଟନା ଜଣାଇ କହିଲା, "ତୁମେ ଚିନ୍ତା କରନା; ଆମର ଏ ଦୁଃଖ ବେଶି ଦିନ ରହିବ ନାହିଁ । ପକ୍ଷୀମାନେ ଏକମନ ହୋଇ କାମ କରୁଛନ୍ତି ବୋଲି ଧରାପଡ଼ୁନାହାନ୍ତି । ଦେଖିବ, କେଇଟାଦିନ ଭିତରେ ସେମାନେ ଆପଣା ଆପଣା ମଧ୍ୟରେ କଳି କରିବେ । ସେତେବେଳେ ମୁଁ ସହଜରେ ସେମାନଙ୍କୁ ଧରିପାରିବି ।"

ଏହି ଘଟନାର ଦିନେ ଦୁଇଦିନ ପରେ ଚଢ଼େଇମାନେ ବଣରେ ଚରିବାକୁ ଯାଇଥିଲେ । ତଳେ ବସିଲାବେଳକୁ ଗୋଟିଏ ପକ୍ଷୀର ପାଦ ଅନ୍ୟ ଏକ ପକ୍ଷୀର ମୁଣ୍ଡରେ ବାଜିଲା । ସେ ପକ୍ଷୀ ରାଗିଯାଇ କହିଲା, "ମୋ ମୁଣ୍ଡରେ କିଏ ଗୋଇଠା ମାରିଲା ?" ଅପର ପକ୍ଷୀ କହିଲା, "ମୁଁ ବସିଗଲା ବେଳକୁ ଦୈବାତ୍ ମୋର ପାଦ ତୋ ମୁଣ୍ଡ ଉପରେ ବାଜିଲା । ମୁଁ କଅଣ ଜାଣିଶୁଣି ତୋତେ ମାରିଲି ?" ପ୍ରଥମ ପକ୍ଷୀଟି ଏଥିରେ ସନ୍ତୁଷ୍ଟ ନ ହୋଇ କହିଲା, "ଜାଣିକରି ମାରିନାହୁଁ ତ, ମୋ ମୁଣ୍ଡରେ ତୋ ଗୋଡ଼ ପଡ଼ିଲା କପରି ?" ଏହିପରି ଦୁହିଁଙ୍କ ଭିତରେ ଖୁବ୍ କଳିଲାଗିଲା । ଶେଷରେ ଜାଲ ନେଇ ଉଡ଼ିବା କଥା ପଡ଼ିଲା । ଜଣେ କହିଲା, "ତୁ କଅଣ ଏକୁଟିଆ ଜାଲ ନେଇ ଉଡ଼ିଯାଇପାରନ୍ତୁ ? ଆମେ ତୋତେ ସାହାଯ୍ୟ କରୁଛୁ ବୋଲି ଆଜିଯାଏ ତୋର ଜୀବନ ରହିଛି ।" ଆଉ ଜଣକ କହିଲା,

“ମୁଁ କଅଣ ଜାଲ ନେବାରେ ସାହାଯ୍ୟ କରୁନାହିଁ । ଆଚ୍ଛା, ଦେଖିବା ଏଥର ମୁଁ ଆଉ ମୋଟେ ଜାଲକୁ ଟେକ ଧରିବି ନାହିଁ ।” ବୋଧିସତ୍ତ୍ୱ ଏମାନଙ୍କର କଳି ଦେଖି ଦୁହିଁଙ୍କୁ ବୁଝାଇ କହିଲେ, “ତୁମେମାନେ ଏପରି କଳି କଲେ କାହାର ମଙ୍ଗଳ ହେବ ନାହିଁ । ଶେଷରେ ଆମେ ସମସ୍ତେ ମରିବା ।” କିନ୍ତୁ କେହି ବୋଧିସତ୍ତ୍ୱଙ୍କ କଥାକୁ ଶୁଣିଲେ ନାହିଁ ।

ନିରାଶ ହୋଇ ବୋଧିସତ୍ତ୍ୱ ଦଳ ଛାଡ଼ି ଚାଲିଗଲେ । ଅଳ୍ପ କେତୋଟି ତିତିର ତାଙ୍କ ସଙ୍ଗରେ ବାହାରିଗଲେ ।

କିଛିଦିନ ପରେ ବ୍ୟାଧ ପୁଣି ପୂର୍ବପରି ଶବ୍ଦ କରିବାରୁ ତିତିରମାନେ ଏକତ୍ର ହେଲେ ଓ ବ୍ୟାଧ ସେମାନଙ୍କ ଉପରକୁ ଜାଲ ଫିଙ୍ଗିଲା । କିନ୍ତୁ ପକ୍ଷୀମାନେ ଆଗଭଳି ଏକମନପ୍ରାଣରେ ଜାଲକୁ ନେଇ ଉଡ଼ିଗଲେନି । ସେମାନେ ପରସ୍ପର ମଧ୍ୟରେ କଳି କରିବାରେ ଲାଗିଲେ । କିଏ କହିଲା, “ତୁ ଉଠାଉନାହୁଁ ।” ଆଉ କିଏ କହିଲା, “ତୋ ଗୋଡ଼ରେ ମୋ ପିଠି ଦଳିହୋଇଗଲା ।” ସେମାନେ ଏହିପରି କଳି କରୁଥିଲାବେଳେ ବ୍ୟାଧ ଜାଲ ଟାଣିବାରୁ ସବୁପକ୍ଷୀ ଏକାଠି ଧରାପଡ଼ିଲେ । ବ୍ୟାଧ ସେମାନଙ୍କୁ ଧରି ଘରକୁ ନେଲା । ବ୍ୟାଧର ସ୍ତ୍ରୀ ଏତେଗୁଡ଼ିଏ ପକ୍ଷୀ ଦେଖି ଆନନ୍ଦରେ ପଚାରିଲା, “ଏତେଦିନ ହେଲା ଗୋଟିଏ ହେଲେ ପକ୍ଷୀ ଆଣୁ ନ ଥିଲ । ଆଜି କିପରି ଏକାବେଳକେ ଏତେଗୁଡ଼ିଏ ପକ୍ଷୀ ଧରିଲ ?” ବ୍ୟାଧ କହିଲା, “ମୋ କଥା ସତ ହୋଇଛି । ପକ୍ଷୀମାନେ ଏକମନ ହୋଇ କାମ କରୁଥିବାରୁ ମୁଁ ସେମାନଙ୍କୁ ଧରିପାରୁ ନ ଥିଲି । ଏବେ ସେମାନଙ୍କ ଭିତରେ କଳି ଲାଗିଲାଣି । ଫଳରେ ମୋର ଲାଭ ।”

ବ୍ୟାଧର ସ୍ତ୍ରୀ ମୁହଁରେ ହସ ଫୁଟିଲା ।

# ବଗଳାର ଜାତକ

ଏକ ପୂର୍ବଜନ୍ମରେ ବୋଧିସତ୍ତ୍ୱ ଗୋଟିଏ ମୂଷିକରୂପେ ଜନ୍ମଗ୍ରହଣ କରିଥିଲେ । ମୂଷିକ ହେଲେହେଁ ସେ ଆକାରରେ ଖୁବ୍ ବଡ଼ ଥିଲେ ଓ ତାଙ୍କର ବିଚକ୍ଷଣ ବୁଦ୍ଧି ଥିଲା । ସେ ଗୋଟିଏ ବନ ମଧ୍ୟରେ ବାସ କରୁଥିଲେ । ବନର ସହସ୍ର ସହସ୍ର ମୂଷିକ ତାଙ୍କୁ ନିଜର ରାଜା ବୋଲି ମାନୁଥିଲେ ଓ ତାଙ୍କର ଆଦେଶ ମାନି ଚଳୁଥିଲେ ।

ସେହି ବନରେ ଗୋଟିଏ ଶୃଗାଳ ବାସ କରୁଥିଲା । ସେ ବନ ମଧ୍ୟରେ ଇତସ୍ତତଃ ଭ୍ରମଣ କରି କ୍ଷୁଦ୍ର ଜୀବମାନଙ୍କୁ ମାରି ନିଜର ଉଦର ପୂରଣ କରୁଥିଲା ।

ଦିନେ ସେ ଏହି ମୂଷିକମାନଙ୍କୁ ଦେଖି ସେମାନଙ୍କୁ ଖାଇବା ପାଇଁ ଉପାୟ ଚିନ୍ତାକଲା । ମୂଷିକମାନେ ବୋଧିସତ୍ତ୍ୱଙ୍କ ନେତୃତ୍ୱରେ ଏକତ୍ର ରହୁଥିବାରୁ ସେ ଏକାକୀ ସେମାନଙ୍କୁ ଆକ୍ରମଣ କରିବାକୁ ସାହସ କରି ପାରିଲା ନାହିଁ । ବଳର ଆଶ୍ରୟ ନ ନେଇ କୌଶଳର ଆଶ୍ରୟ ନେବାକୁ ସେ ସ୍ଥିରକଲା । ସେ ମୂଷିକମାନଙ୍କ ବାସସ୍ଥାନଠାରୁ ଅଳ୍ପ ଦୂରରେ ଗୋଟିଏ ପାଦରେ ଭରଦେଇ ଛିଡ଼ା ହୋଇ ସୂର୍ଯ୍ୟଙ୍କୁ ଚାହିଁ ଦୀର୍ଘଶ୍ୱାସ ନେବାକୁ ଲାଗିଲା । ବୋଧିସତ୍ତ୍ୱ ନିଜର ଅନୁଚରମାନଙ୍କ ସହିତ ଖାଦ୍ୟ ଅନ୍ୱେଷଣରେ ବାହାରିଲେ । ଶୃଗାଳକୁ ଦେଖି ବୋଧିସତ୍ତ୍ୱ ମନେକଲେ—ଏ ନିଶ୍ଚୟ ଗୋଟିଏ ଖୁବ୍ ଧାର୍ମିକ ପ୍ରାଣୀ । ସେ ଶୃଗାଳ ନିକଟକୁ ଯାଇ ପଚାରିଲେ, "ଆପଣ ଏକ ପାଦରେ ଭରଦେଇ ଠିଆ ହୋଇଛନ୍ତି ?" ଶୃଗାଳ ଉତ୍ତର କଲା, "ମୁଁ ଚାରିଟି ଯାକ ପାଦରେ ଠିଆହେଲେ ମୋ ଭରରେ ପୃଥିବୀକୁ କଷ୍ଟ ହେବ । ସେଥିପାଇଁ ମୁଁ ଗୋଟିଏ ମାତ୍ର ପାଦରେ ଛିଡ଼ା ହୋଇ ରହୁଛି ।" ବୋଧିସତ୍ତ୍ୱ ପ୍ରଶ୍ନ କଲେ, "ଆପଣ ଏପରି ଉପରକୁ ଚାହିଁ ରହିବାର କାରଣ କଅଣ ?"

ଶୃଗାଳ କହିଲା, "ସୂର୍ଯ୍ୟ ହେଉଛନ୍ତି, ମହାନ୍ ଦେବତା । ତାଙ୍କୁ

ଆରାଧନା କରିବା ପାଇଁ ମୁଁ ଉପରକୁ ଚାହିଁ ରହିଛି ।” ପୁଣି ବୋଧିସତ୍ତ୍ୱ ପଚାରିଲେ, “ଆପଣ ମୁଖଶ୍ୱାସ ନେଉଛନ୍ତି କାହିଁକି ?” ଶୃଗାଳ କହିଲା, “ମୁଁ ଜୀବହିଂସା କରେ ନାହିଁ । ତେଣୁ ଆତଶୋର ପ୍ରାଣରକ୍ଷା କରିବା ପାଇଁ କେବଳ ବାୟୁ ଆହାର କରେ । ମୁଖନିଶ୍ୱାସ ନେଇ ମୁଁ ବାୟୁ ଆହାର କରୁଅଛି ।”

ବୋଧିସତ୍ତ୍ୱ ଚିନ୍ତା କଲେ, “ଏହି ଶୃଗାଳଟି ନିଶ୍ଚୟ ଅତି ଧାର୍ମିକ । ଏହା ସଙ୍ଗରେ ପ୍ରତିଦିନ କିଛି ସମୟ କଟାଇ ଧର୍ମଚର୍ଚ୍ଚା କଲେ ମୋର ଓ ମୋ ଅନୁଚରମାନଙ୍କର ଯଥେଷ୍ଟ ଉପକାର ହେବ ।” ଏହାପରେ ବରାବର ବୋଧିସତ୍ତ୍ୱ ପ୍ରତ୍ୟହ ସକାଳେ ଓ ସନ୍ଧ୍ୟାରେ ସକଳ ଅନୁଚରେ ସହିତ ଶୃଗାଳ ନିକଟକୁ ଯାଇ ତାକୁ ପୂଜା କରିବାକୁ ଲାଗିଲେ । ବୋଧିସତ୍ତ୍ୱ ସର୍ବଦା ଦଳଟିର ଆଗରେ ରହୁଥିଲେ; ଅନ୍ୟମାନେ ଧାଡ଼ି ବାନ୍ଧି ତାଙ୍କ ପଛରେ ଯିବାଆସିବା କରୁଥିଲେ । ସେମାନେ ତାକୁ ପୂଜା କରି ଫେରିବାବେଳେ ଧୂର୍ତ୍ତ ଶୃଗାଳ ଧାଡ଼ିର ଶେଷରେ ଥିବା ମୂଷିକଟିକୁ ଧରି ନେଇ ଖାଉଥିଲା ।

ଏହିପରି କେତେ ଦିନଯାଏ ଶୃଗାଳ ମୂଷିକମାନଙ୍କୁ ଗୋଟି ଗୋଟି କରି ଖାଇଲା । ମୂଷିକମାନେ ଲକ୍ଷ୍ୟ କଲେ ଯେ ସେମାନଙ୍କର ସଂଖ୍ୟା କମିଯାଉଅଛି । ସେମାନେ ବୋଧିସତ୍ତ୍ୱଙ୍କୁ ଏଥିର କାରଣ ପଚାରିଲେ । ସେ କୌଣସି କାରଣ ସ୍ଥିର କରି ପାରିଲେ ନାହିଁ; କିନ୍ତୁ ତାଙ୍କର ଶୃଗାଳ ଉପରେ ସନ୍ଦେହ ହେଲା । ତାଙ୍କର ଏହି ସନ୍ଦେହ ଠିକ୍ କି ଭୁଲ ଜାଣିବା ପାଇଁ ସେ ଗୋଟିଏ ଉପାୟ କଲେ । ଦିନେ ସେ ଅନୁଚରମାନଙ୍କୁ ଆଗରେ ରଖି ନିଜେ ସମସ୍ତଙ୍କ ପଛରେ ସାବଧାନ ହୋଇ ଫେରିଲେ । ଶୃଗାଳ ଅନ୍ୟ ଦିନ ପରି ଧାଡ଼ିର ଶେଷରେ ଥିବା ବୋଧିସତ୍ତ୍ୱଙ୍କୁ ଖାଇବ ବୋଲି ଆକ୍ରମଣ କଲା । କିନ୍ତୁ ବୋଧିସତ୍ତ୍ୱ ଆଗରୁ ସାବଧାନ ରହିଥିବାରୁ ତାଙ୍କୁ ଧରିବା ପୂର୍ବରୁ ସେ ବୁଲିପଡ଼ି କହିଲେ, “ଆରେ ଧୂର୍ତ୍ତ, ସଇତାନ ଶୃଗାଳ । ତୋର ଧର୍ମକର୍ମ ଜଣା ପଡ଼ିଗଲା । ଯେ ଧର୍ମର ବାହାନା କରି ଅଧର୍ମ କରେ ସେ ଅତି ହୀନ । ତୋତେ ତୋ କର୍ମର ପ୍ରତିଫଳ ଭୋଗିବାକୁ ହେବ ।”

ଏହା କହି ସେ ତେଇଁପଡ଼ି ଶୃଗାଳର ଗଳାକୁ ନିଜର ତୀକ୍ଷ୍ଣ ଦନ୍ତରେ କାମୁଡ଼ି ଧରିଲେ । ଶୃଗାଳ ଚେଷ୍ଟା କରି ମଧ୍ଯ ତାଙ୍କୁ ନିଜ ଠାରୁ ଛଡ଼ାଇ ପାରିଲା ନାହିଁ । ଗଳାରେ ଛିଦ୍ର ହେବାରୁ ରକ୍ତ ବୋହିବାକୁ ଲାଗିଲା ଓ ଶୃଗାଳ ଯନ୍ତ୍ରଣାରେ ଛଟପଟ ହେଲା । ଏଥି ମଧ୍ୟରେ ମୂଷିକମାନେ ଶୃଗାଳକୁ କାମୁଡ଼ି ଖାଇବାକୁ ଆରମ୍ଭ କରିଦେଲେ । ଅଳ୍ପ ସମୟ ପରେ କେତେ ଖଣ୍ଡି ହାଡ଼ ଛଡ଼ା ଶୃଗାଳର ଅନ୍ୟ କୌଣସି ଚିହ୍ନ ରହିଲା ନାହିଁ ।

ଏହାପରେ ମୂଷିକମାନେ ନିଶ୍ଚିନ୍ତରେ ବାସ କରିବାକୁ ଲାଗିଲେ ।

## ଶିଗାଲ ଜାତକ (୧)

ଥରେ ବୋଧିସତ୍ତ୍ୱ ଶୃଗାଳଜନ୍ମ ପାଇଥିଲେ । ସେ ଗୋଟିଏ ଶ୍ମଶାନରେ ରହି ସେଠାରେ ଥିବା ଶୃଗାଳମାନଙ୍କର ରାଜା ହୋଇଥିଲେ ।

ଏହି ସମୟରେ ଦିନେ ରାଜଗୃହରେ ଏକ ବିରାଟ ମେଳା ହେଲା । ସହସ୍ର ସହସ୍ର ଲୋକ ମେଳା ଦେଖିବାକୁ ଆସିଥିଲେ । ଖାଇବା ପିଇବାରେ ଧୁମ୍ ଲାଗିଲା । ମଦ ପିଇବାରେ ଜଣେ ଜଣକୁ ବଳିଗଲା । ମାଂସ ଖାଇ ଓ ମଦ ପିଇ ସେମାନେ ଆନନ୍ଦରେ ମେଳାରେ ବୁଲିବାକୁ ଲାଗିଲେ ।

ସେହି ରାଜଗୃହର ଦଳେ ଲୋକ ମେଳାରେ ମଉଜ କରିବାକୁ ଆସିଥିଲେ । ପ୍ରାୟ ରାତି ଅଧବେଳକୁ ସେମାନଙ୍କର ଖିଆପିଆ ହେଲା । ଖାଇବା ସମୟରେ ଦେଖାଗଲା ଯେ ଯଥେଷ୍ଟ ମାଂସ ନାହିଁ । ପେଟ ପୂରି କରି ନ ଖାଇଲେ ମଉଜ କଅଣ ? ସେମାନଙ୍କ ଭିତରୁ ଜଣେ କହିଲା "ଯେକୌଣସିମତେ କିଛି ମାଂସ ଯୋଗାଡ଼ ନ କଲେ ହେବ ନାହିଁ, ମେଳା ଦେଖିବାକୁ ଆସିଥାଏଁ । ପେଟପୂରି ନ ଖାଇ ଫେରିଯିବା କପରି ?" ଅନ୍ୟମାନେ କହିଲେ, "ଏତେ ରାତିରେ ମାଂସ କାହିଁ ମିଳିବ । ଗୃହ

ଶୋଇପଡ଼ିବା ।" କିନ୍ତୁ ପ୍ରଥମ ଲୋକଟିର ଏକା ଜିଦ୍; ମାଂସ ଆଣି ରାନ୍ଧି ଖାଇବେ । ସେ କହିଲା, "ମୁଁ ଥାଉଁ ଥାଉଁ ମାଂସ ମିଳିବ ନାହିଁ ? ମୁଁ ଯାଉଛି, ଘଡ଼ିକ ଭିତରେ ମାଂସ ନେଇ ଆସୁଛି । ତୁମେମାନେ ପାଣି ଗରମ କରୁଥାଅ ।"

କେତେ ଜଣ ପଚାରିଲେ, "କେଉଁଠାରୁ ମାଂସ ପାଇବ ?" ସେ ଉତ୍ତର କଲା, "ବୁଦ୍ଧିବଳରେ ସବୁ ହୋଇ ପାରିବ । ପାଖରେ ଗୋଟାଏ ଶ୍ମଶାନ ଅଛି । ସେଠାରେ ଅନେକ ଶୃଗାଳ ଅଛନ୍ତି । ସେଥିରୁ ଗୋଟିଏ ମାରିନେଇ ଆସିଲେ ଯଥେଷ୍ଟ ମାଂସ ହେବ ।" ଏହା କହି ସେ ଗୋଟାଏ ଠେଙ୍ଗା ଧରି ଶ୍ମଶାନକୁ ଚାଲିଗଲା ।

ଶ୍ମଶାନରେ ପହଞ୍ଚି ସେ ଗୋଟିଏ ଜାଗାରେ ଶୋଇ ହୋଇ ମଡ଼ା ପରି ପଡ଼ିରହିଲା । ହାତରେ ଠେଙ୍ଗାଟିକୁ ମୁଠେଇ ଧରି ପାଖରେ ରଖିଥାଏ । ସେ ବିଚାରିଥିଲା ଯେ ତାକୁ ମଡ଼ା ମନେକରି କୌଣସି ବିଲୁଆ ତା ପାଖକୁ ଆସିଲେ, ସେ ତାକୁ ଠେଙ୍ଗାରେ ପିଟି ମାରି ପକାଇବ । ତାହାହେଲେ ସେହି ବିଲୁଆର ମାଂସକୁ ସେମାନେ ଖାଇବେ ।

କିଛି ସମୟ ପରେ ବୋଧିସତ୍ତ୍ୱ କେତୋଟି ଶୃଗାଳ ସହିତ ସେଠାରେ ପହଞ୍ଚିଲେ । ସେ ଟିକିଏ ଦୂରରେ ରହି ଏହି ଶୋଇଥିବା ଲୋକଟିକୁ ଦେଖିଲେ । ତାଙ୍କର ସନ୍ଦେହ ହେଲା ଯେ ଲୋକଟି ପ୍ରକୃତରେ ମଡ଼ା ନୁହେଁ; କୌଣସି ମନ୍ଦ ଉଦ୍ଦେଶ୍ୟରେ ମିଛରେ ପଡ଼ିଛି । ପାଖରେ ଠେଙ୍ଗାଟିଏ ଥିବାର ଦେଖି ତାଙ୍କର ସନ୍ଦେହ ଆହୁରି ଦୃଢ଼ୀଭୂତ ହେଲା । ତଥାପି ପ୍ରକୃତ କଥା ଜାଣିବା ପାଇଁ ସେ ସାବଧାନରେ ଯଥାସମ୍ଭବ ଦୂରରେ ରହି ଦାନ୍ତରେ ଠେଙ୍ଗାର ଅଗଟିକୁ କାମୁଡ଼ି ଧରି ଟାଣିଲେ । ଦୁଷ୍ଟ ଲୋକଟି ଛାଡ଼ି ନ ଦେଇ ଆହୁରି ଜୋର୍‌ରେ ମୁଠେଇ ଧରିଲା ଓ ବୋଧିସତ୍ତ୍ୱ ଅଗରୁ ଟାଣିଲା-ବେଳକୁ ସେ ମଧ୍ୟ ଟାଣିଧରିଲା । ବୋଧିସତ୍ତ୍ୱ ଏବେ ନିଶ୍ଚିତ ରୂପେ ଜାଣିପାରିଲେ ଯେ ଶୃଗାଳମାନଙ୍କୁ ମାରିବା ପାଇଁ ଲୋକଟା ମିଛରେ ମଡ଼ା ପରି ଶୋଇଥିଲା । ସେ ଦୁଇ ଚାରିପାଦ ପଛକୁ ଘୁଞ୍ଚିଯାଇ କହିଲେ,

"ଆରେ ଧୂର୍ତ୍ତ, ତୋ କଥା ଜଣା ପଡ଼ିଗଲା । ତୁ ଯେବେ ମରିଥାନ୍ତୁ, ମୁ ଠେଙ୍ଗାକୁ କାମୁଡ଼ି ଟାଣିଲାବେଳକୁ ତୁ ଓଷ୍ଠାଗ୍ର ଧରିପାରି ନ ଥାନ୍ତୁ । ଏଇଥିରୁ ତୁ ଧରା ପଡ଼ିଗଲୁ । ଯା, ଆମେ ଆଉ ତୋ ପାଖକୁ ଯିବୁ ନାହିଁ ।"

ଲୋକଟି ଦେଖିଲା ଯେ ତା ଉପାୟ ବୃଥା ହୋଇଗଲା । ସାଙ୍ଗମାନଙ୍କୁ ସେ କ'ଣ କହିବ ? ଖାଲି ହାତରେ ଫେରିଯିବାର ଦେଖି ସେମାନେ ତାକୁ ନିଶ୍ଚୟ ଉପହାସ କରିବେ ।

ରାଗରେ ସେ ହଠାତ୍ ଉଠିପଡ଼ି ଠେଙ୍ଗାଟିକୁ ବୋଧିସତ୍ତ୍ୱଙ୍କ ଆଡ଼କୁ ଫିଙ୍ଗିଲା । ମାତ୍ର ଠେଙ୍ଗାଟି ତାଙ୍କ ଦେହରେ ବାଜିଲା ନାହିଁ । ତହୁଁ ସେ ଦୁଃଖରେ କହିଲା, "ଆରେ ଶୃଗାଳ, ତୋ କପାଳ ତେଜ । ତୁ ମୋ ହାବୁଡ଼ରୁ ଖସିଗଲୁ ।"

ଏହା ଶୁଣି ବୋଧିସତ୍ତ୍ୱ କହିଲେ, "ହଁ, ମୁଁ ତୋ ପାଖରୁ ଖସିଗଲି; କିନ୍ତୁ ତୁ ଯେଉଁ ପାପକାର୍ଯ୍ୟ କରୁଛୁ ସେଥିରେ ତୁ ଯମପାଖରୁ ଖସିପାଇ ପାରିବୁ ନାହିଁ । ତୋତେ ନେଇ ଯମ ନରକରେ ପକାଇବ, ଏଥିରେ ସନ୍ଦେହ ନାହିଁ ।"

ହତଭାଗ୍ୟ ଲୋକଟି ନିରାଶ ହୋଇ ଯେଉଁ ବାଟେ ଆସିଥିଲା, ସେହି ବାଟେ ଫେରିଗଲା ।

## ଶୃଗାଳ ଜାତକ (୨)

ଏକ ଜନ୍ମରେ ବୋଧିସତ୍ତ୍ୱ ଶୃଗାଳ ରୂପେ ଜନ୍ମଗ୍ରହଣ କରିଥିଲେ । ସେ ଗୋଟିଏ ନଦୀର ତୀରରେ ବନମଧ୍ୟରେ ବାସ କରୁଥିଲେ । ଥରେ ଗୋଟିଏ ପ୍ରକାଣ୍ଡ ହସ୍ତୀ ସେହି ନଦୀତୀରରେ ମରି ପଡ଼ିଥିଲା । ବୋଧିସତ୍ତ୍ୱ

ଆହାର ଅନ୍ୱେଷଣରେ ବୁଲୁ ବୁଲୁ ହାତୀର ପ୍ରକାଣ୍ଡ ମୃତ ଦେହ ଦେଖିବାକୁ ପାଇଲେ । ସେ ଭାବିଲେ, ଭାଗ୍ୟ ମୋର ଅନୁକୂଳ । ଏହି ହାତୀର ମାଂସରେ ମୋର ଅନେକ ମାସ ପର୍ଯ୍ୟନ୍ତ ଆହାର ଚଳିବ । ମୋତେ ବନ ମଧ୍ୟରେ ଇତସ୍ତତଃ ବୁଲି ଆହାର ସଂଗ୍ରହ କରିବାକୁ ପଡ଼ିବ ନାହିଁ । ଏହାପରେ ବାଘରେ ସେ ହାତୀର ଦାନ୍ତକୁ ଖାଇବାକୁ ଚେଷ୍ଟା କଲେ । କିନ୍ତୁ ସେଥିରେ ତାଙ୍କ ଦାନ୍ତର ଦାଗ ସୁଦ୍ଧା ବସିଲା ନାହିଁ । ତତ୍ପରେ ସେ ଶୁଣ୍ଢ, କାନ, ପାଦ ପ୍ରଭୃତି ସ୍ଥାନଗୁଡ଼ିକରେ କାମୁଡ଼ିଲେ; କିନ୍ତୁ କୌଣସିଠାରେ ତାଙ୍କର ଦାନ୍ତ ପ୍ରବେଶ କରି ପାରିଲା ନାହିଁ । ପରିଶେଷରେ ସେ ହାତୀର ମଳଦ୍ୱାରକୁ କାମୁଡ଼ି ଖାଇବାକୁ ଚେଷ୍ଟା କଲେ । ସୌଭାଗ୍ୟବଶତଃ ଏହି ଅଂଶଟି କୋମଳ ହୋଇଥିବାରୁ ସେ ତାହାକୁ କାମୁଡ଼ି କିଛି ମାଂସ ଖାଇଲେ । ସେ ଦେଖିଲେ ଯେ ଭିତରକୁ ବହୁତ କୋମଳ ମାଂସ ଦେଖାଯାଉଛି । ତେଣୁ ହାତୀର ଉଦର ମଧ୍ୟକୁ ଗଲେ ଓ ପ୍ରଚୁର ରକ୍ତ, ମାଂସ, ଅନ୍ତ ପ୍ରଭୃତି ଖାଇବାକୁ ଲାଗିଲେ । ସେ ଆଉ ବାହାରକୁ ଆସିବାର ଆବଶ୍ୟକତା ଦେଖି ପାରିଲେ ନାହିଁ । ମାଂସ ପ୍ରଭୃତି ଖାଇ ସେ ରକ୍ତଦ୍ୱାରା ତୃଷ୍ଣା ନିବାରଣ କରୁଥିଲେ । ରାତିରେ ସେ ନିଶ୍ଚିନ୍ତରେ ହାତୀ ଉଦର ମଧ୍ୟରେ ଶୋଉଥିଲେ । ଏହାପରେ କେତେଦିନ ବିତିଗଲା । ସେ ଭାବିଲେ ଦୈବ ମୋତେ ଯେ କେବଳ ବହୁଦିନ ପାଇଁ ଖାଦ୍ୟ ଯୋଗାଇ ଦେଇଛି ତାହା ନୁହେଁ; ରହିବା ପାଇଁ ସୁନ୍ଦର ବାସସ୍ଥାନ ମଧ୍ୟ ଦେଇଅଛି । ଗଛଠାରୁ ଅପେକ୍ଷା ଏହା ଖୁବ୍ ସୁନ୍ଦର ଓ ନିରାପଦ ସ୍ଥାନ । ଏହାକୁ ଛାଡ଼ି ବାହାରକୁ ଯିବି କାହିଁକି ?

ଗ୍ରୀଷ୍ମକାଳ ଉପସ୍ଥିତ ହେଲା । ବୋଧିସତ୍ତ୍ୱ ବାହାରର ସୂର୍ଯ୍ୟ ତାପରୁ ରକ୍ଷା ପାଇ ନିଜକୁ ଭାଗ୍ୟବାନ୍ ମନେକଲେ । କିନ୍ତୁ ସୂର୍ଯ୍ୟଙ୍କର ପ୍ରଖର କିରଣରେ ହାତୀର ଚର୍ମ ଶୁଖି ସଙ୍କୁଚିତ ହେବାକୁ ଲାଗିଲା । ଦିନେ ବୋଧିସତ୍ତ୍ୱ ଲକ୍ଷ୍ୟ କଲେ ଯେ ସେ ଯେଉଁ ମଳଦ୍ୱାର ବାଟେ ଭିତରକୁ ପ୍ରବେଶ କରିଥିଲେ ତାହା ସମ୍ପୂର୍ଣ୍ଣ ରୂପେ ବନ୍ଦ ହୋଇଯାଇଅଛି । ଭିତରଟି ଘୋର ଅନ୍ଧକାରମୟ

ହୋଇଗଲା । ଏଥିପୂର୍ବରୁ ମଳଦ୍ୱାରବାଟେ କିଛି କିଛି ଆଲୋକ ଭିତରେ ପ୍ରବେଶ କରୁଥିବାରୁ ବୋଧିସତ୍ତ୍ୱ କୌଣସି ଅସୁବିଧା ଅନୁଭବ କରୁ ନ ଥିଲେ; କିନ୍ତୁ ବର୍ତ୍ତମାନ ସେହି ଦ୍ୱାରଟି ବନ୍ଦ ହୋଇଯିବାରୁ ସେ ବାହାର ଜଗତରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ପଡ଼ିଲେ । ଏଣେ ହାତୀର ଚର୍ମ ଶୁଖିଯିବା ପରେ ମାଂସ ଓ ରକ୍ତ ଶୁଖି ଆସିଲା । ଅନ୍ଧକାରରେ ଅଣ୍ଡାଳି ଅଣ୍ଡାଳି ସେ ସମସ୍ତ ସମୟରେ କିଛି ଶୁଷ୍କ ମାଂସ ଖାଉଥିଲେ, କିନ୍ତୁ ରକ୍ତ ନ ପାଇ ତୃଷାର ଅସହ୍ୟ ଯନ୍ତ୍ରଣା ଭୋଗ କରୁଥିଲେ । ଏହି ବନ୍ଦିଶାଳାରୁ ଆସିବା ପାଇଁ ସେ ଯେତେ ଚେଷ୍ଟା କଲେ ମଧ୍ୟ ସଫଳ ହୋଇ ପାରିଲେ ନାହିଁ । ଉଦର ମଧ୍ୟରେ ପ୍ରବେଶ କଲାବେଳେ ତାଙ୍କର ଯେତିକି ଆନନ୍ଦ ହୋଇଥିଲା ଏବେ ତାର ଶତଗୁଣ ଦୁଃଖ ହେଲା । ସେ ନିଜକୁ ନିତାନ୍ତ ଅସହାୟ ମନେକଲେ ।

ଯାହାହେଉ କିଛିଦିନ ପରେ ଅସରାଏ ପ୍ରବଳ ବର୍ଷା ହେଲା । ବର୍ଷା ଜଳ ପଡ଼ିବାରୁ ହାତୀର ଦେହଟି ପୁଣି ଫୁଲି ଉଠିବାରୁ ସେ ବାଟେ ପୁଣି ସୂର୍ଯ୍ୟ-କିରଣ ପ୍ରବେଶ କଲା । ବୋଧିସତ୍ତ୍ୱ ଆନନ୍ଦରେ ଅଧୀର ହୋଇ ସେହି ବାଟେ ବାହାରି ଆସିଲେ । କିନ୍ତୁ ବ୍ୟଗ୍ରଭାବରେ ବାହାରିଲା ବେଳକୁ ତାଙ୍କ ଦେହର ଲୋମଗୁଡ଼ିକ ଉପୁଡ଼ିଗଲା । ସେ ସେଥିପ୍ରତି ଭ୍ରୂକ୍ଷେପ ନ କରି ବାହାରକୁ ଆସିଲା ମାତ୍ରେ ଆନନ୍ଦରେ ଚିତ୍କାର କଲେ, "ଓଃ, ଭଗବାନ୍ ମୋତେ ରକ୍ଷାକଲେ ।"

ସେ ଆଉ ସେହି ହାତୀର ଦେହପାଖେ ନ ରହି ଦଉଡ଼ିବାକୁ ଲାଗିଲେ । କିଛି ଦୂର ଯିବାପରେ ସେ ବିଶ୍ରାମ ନେବାକୁ ଗୋଟିଏ ବୃକ୍ଷମୂଳରେ ବସି-ଗଲେ । ସେ ନିଜର ଲୋମହୀନ ଦେହକୁ ଲକ୍ଷ୍ୟ କରି କହିଲେ, "ହାୟ ! ମୁଁ ଯେ ଏପରି ବିକୃତ ହୋଇ କୌଣସିମତେ ଜୀବନ ରକ୍ଷାକରି ଆସିଲି, ତାହା ମୋର ଲୋଭର ଫଳ । କେବଳ ଲୋଭର ବଶବର୍ତ୍ତୀ ହେବାରୁ ମୋର ଏ ଦୁର୍ଦ୍ଦଶା ଘଟିଲା । ଭବିଷ୍ୟତରେ କେବେ ହେଲେ ମୁଁ ଲୋଭର ବଶ ହେବି ନାହିଁ କି ହସ୍ତୀର ଦେହ ମଧ୍ୟରେ ପ୍ରବେଶ କରିବି ନାହିଁ ।

ସେହି ଦିନଠାରୁ ସେ ଲୋଭ ତ୍ୟାଗ କରି ସୁଖରେ ବାସ କରିବାକୁ ଲାଗିଲେ ।

# ସର୍ବଦନ୍ତ ଜାତକ

ଏକଦା ବୋଧିସତ୍ତ୍ୱ ବାରାଣସୀର ଏକ ବ୍ରାହ୍ମଣ ପରିବାରରେ ଜନ୍ମିଥିଲେ । ଯଥା ସମୟରେ ବେଦ ଓ ବିବିଧ ଶାସ୍ତ୍ର ଅଧ୍ୟୟନ କରି ସେ ବାରାଣସୀରାଜ ବ୍ରହ୍ମଦତ୍ତଙ୍କର କୁଳପୁରୋହିତ ପଦରେ ନିଯୁକ୍ତ ହେଲେ । ବିବିଧ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜିବା ବ୍ୟତୀତ ସେ 'ସର୍ବଜୟ' ବୋଲି ଏକ ମନ୍ତ୍ର ଆୟତ୍ତ କରିଥିଲେ । ଏହି ମନ୍ତ୍ରର ଏକ ଅଦ୍ଭୁତ ଶକ୍ତି ଥିଲି । ଏହା ଦ୍ୱାରା ସମସ୍ତ ପୃଥିବୀ ଜୟ କରିବା ସମ୍ଭବପର ଥିଲା ।

ଦିନେ ବୋଧିସତ୍ତ୍ୱ ମନ୍ତ୍ରପାଠ କରିବାକୁ ଇଚ୍ଛା କଲେ । ମନ୍ତ୍ରପାଠର ବିଧି ଅନୁସାରେ ସେ ଏକ ସ୍ଥାନକୁ ଯାଇ ଖଣ୍ଡିଏ ପଥର ଉପରେ ବସିଲେ ଓ ଧ୍ୟାନଦ୍ୱାରା ମନକୁ ବଶୀଭୂତ କରି ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ । ନିକଟରେ ଗୋଟିଏ ଶୃଗାଳ ଗର୍ତ୍ତ ଭିତରେ ଲୁଚି ରହିଥିଲା । ସେ ପୂର୍ବ ଜନ୍ମରେ ଜଣେ ବ୍ରାହ୍ମଣ ଥିଲା, ସର୍ବଜୟ ମନ୍ତ୍ରକୁ ଆୟତ୍ତ କରିଥିଲା । ବୋଧିସତ୍ତ୍ୱ ମନ୍ତ୍ରପାଠ କରୁଥିବା ସମୟରେ ସେ ତାହାକୁ ଶୁଣି ପାରିଲା ଓ ପୂର୍ବ ଜନ୍ମର ସଂସ୍କାରବଶତଃ ସମସ୍ତ ମନ୍ତ୍ରଟି ମନେ ରଖିଲା ।

ବୋଧିସତ୍ତ୍ୱ ମନ୍ତ୍ରପାଠ ଶେଷରେ ନିଜ ଆସନରୁ ଉଠିଯିବାବେଳେ ମନକୁ ମନ କହିଲେ, "ଯାହା ହେଉ ମନ୍ତ୍ରଟି ମୋର ସ୍ମରଣରେ ଅଛି; ଭୁଲିଯାଇ ନାହିଁ ।" ଏହି ସମୟରେ ଗର୍ତ୍ତ ମଧ୍ୟରୁ ବାହାରିପଡ଼ି ଶୃଗାଳ କହିଲା, "ହେ ବ୍ରାହ୍ମଣ, ତୁମେ ମନ୍ତ୍ରଟି ରଖିଛ ବୋଲି ଆନନ୍ଦିତ ହେବାର କାରଣ ନାହିଁ । ମୁଁ ମଧ୍ୟ ଉତ୍ତମ ରୂପେ ମନ୍ତ୍ରଟି ଶିକ୍ଷା କରିଅଛି ।" ଏହା କହି ସେ ପଳାଇବାକୁ ବସିଲା । ବୋଧିସତ୍ତ୍ୱ ମନେକଲେ—ଏ ଦୁଷ୍ଟ ଶୃଗାଳ ଏହି ମନ୍ତ୍ରର ଅଧିକାରୀ ହୋଇ କେବଳ ଅନିଷ୍ଟ ସାଧନ କରିବ । ତେଣୁ ସେ ଶୃଗାଳକୁ ବଧ କରିବାପାଇଁ ତାହା ପଛରେ ଦୌଡ଼ିଲେ । କିନ୍ତୁ ଶୃଗାଳ ଏତେ ବେଗରେ ଦୌଡ଼ି ପଳାଇଲା ଯେ ବୋଧିସତ୍ତ୍ୱ ତାକୁ ଧରିପାରିଲେ ନାହିଁ । ଅଗତ୍ୟା ଶୃଗାଳର ଅନୁଧାବନ ନ କରି ନିଜ ଗୃହକୁ ଫେରି ଆସିଲେ ।

ଶୃଗାଳ ବନମଧ୍ୟରେ ଯାଉ ଯାଉ ଗୋଟିଏ ଶୃଗାଳୀ ଭେଟିଲା । ସର୍ବଜୟ ମନ୍ତ୍ରର ଅଧିକାରୀ ହୋଇଥିବାରୁ ସେ ଗର୍ବରେ ଉତ୍‌ଫୁଲ୍ଲ ହୋଇଥାଏ । ସେ ଶୃଗାଳୀକୁ ଟିକିଏ କାମୁଡ଼ିଦେଲା । ଏଥିରେ ଶୃଗାଳୀ ବିରକ୍ତ ହୋଇ କହିଲା, "ତୁମେ କିଏ ? ମୋତେ ଏପରି କାମୁଡ଼ିବାର ଉଦ୍ଦେଶ୍ୟ କଅଣ ?" ଶୃଗାଳ କହିଲା; "ମୁଁ କିଏ ତୁ କଣ ଜାଣୁନାହିଁ ?" ମୁଁ ସର୍ବଜୟ ମନ୍ତ୍ର ଜାଣେ, ମନ୍ତ୍ର ପାଠ କଲେ ଏକା ତୁ କଅଣ, ବନର ସକଳ ଜନ୍ତୁ ମୋର ବଶୀଭୂତ ହୋଇଯିବେ । ଏହା କହି ସେ ମନ୍ତ୍ରପାଠ କରିବାକୁ ଲାଗିଲା । ଏହା ଫଳରେ ଏକା ସେ ଶୃଗାଳୀ ନୁହେଁ, ବନରେ ସିଂହ, ବ୍ୟାଘ୍ର, ହସ୍ତୀ, ହରିଣ, ଶୂକର ପ୍ରଭୃତି ଯେତେ ପଶୁ ଥିଲେ ସମସ୍ତେ ଆସି ତାହା ଚାରିପାଖେ ରୁଣ୍ଡ ହୋଇ ତାର ସେବା କରିବାକୁ ପ୍ରସ୍ତୁତ ହେଲେ । ସେ କହିଲା, "ବର୍ତ୍ତମାନ ମୁଁ ସମସ୍ତ ପଶୁଙ୍କର ରାଜା, ମୋର ନାମ ସର୍ବଦନ୍ତ ।" ସେ ଗୋଟିଏ ଶୃଗାଳୀକୁ ନିଜର ରାଣୀ ପଦରେ ବରଣ କଲେ । ଦୁଇଟି ହସ୍ତୀ ଉପରେ ଗୋଟିଏ ସିଂହ ଠିଆ ହୋଇ ରହିଲା, ତାହାର ଉପରେ ବସି ସର୍ବଦନ୍ତ ଓ ତାହାର ରାଣୀ ବନ ପରିକ୍ରମା କରିବାକୁ ଲାଗିଲେ ।

କିଛି ଦୂର ଯିବାପରେ ସର୍ବଦନ୍ତ ଚିନ୍ତାକଲା, "ମୁଁ ଏବେ ବନର ରାଜା, ସମସ୍ତ ପଶୁ ମୋର ଅଧୀନ । କିନ୍ତୁ ମନୁଷ୍ୟମାନଙ୍କ ଉପରେ ପ୍ରଭୁତ୍ୱ କରି ନ ପାରିଲେ କି ଲାଭ ! ମୁଁ କେବଳ ପଶୁମାନଙ୍କର ରାଜା ନ ହୋଇ ମନୁଷ୍ୟମାନଙ୍କର ମଧ୍ୟ ରାଜା ହେବି ।" ସେ ମନେ ମନେ ସ୍ଥିର କଲା ଯେ ସେ ବାରାଣସୀ ରାଜ୍ୟ ଅଧିକାର କରିବ ।

ଏହି ଉଦ୍ଦେଶ୍ୟରେ ସେ ବନର ଲକ୍ଷ ଲକ୍ଷ ପଶୁଙ୍କ ସଙ୍ଗରେ ସେନା ବାରାଣସୀରେ ଉପସ୍ଥିତ ହେଲା । ନଗରର ଲୋକେ ଦେଖିଲେ, ବାର ଯୋଜନ ପର୍ଯ୍ୟନ୍ତ କେବଳ ସିଂହ, ବ୍ୟାଘ୍ର, ହସ୍ତୀ ପ୍ରଭୃତି ବନ୍ୟଜନ୍ତୁ ବ୍ୟାପି ରହିଛନ୍ତି । ସେମାନେ ଭୟରେ ଲୁଚି ରହିଲେ । ସର୍ବଦନ୍ତ ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କ ପାଖକୁ ଗୋଟିଏ ଦୂତ ପଠାଇ ସମ୍ବାଦ ଦେଲା—ମୋ ହସ୍ତରେ ରାଜ୍ୟ ସମର୍ପଣ କରି ପଳାଇଯାଅ । ନୋହେଲେ ମୋ ସଙ୍ଗେ ଯୁଦ୍ଧ କର ।

ରଜା ଶୃଗାଳର ଦୂତଠାରୁ ଏହା ଶୁଣି ଓ ଲକ୍ଷ୍ୟ ଲକ୍ଷ୍ୟ ପଶୁଙ୍କର ସମାଗମ ଦେଖି ଭୀତ ହୋଇଗଲେ । ନଗରବାସୀମାନେ ଗୃହ ମଧ୍ୟରେ ଲୁଚି ରହିଲେ । କେହି ବାହାରକୁ ଆସିବାକୁ ସାହସ କଲେ ନାହିଁ । ବୋଧିସତ୍ତ୍ୱ ଏ ପ୍ରକାର ଅବସ୍ଥା ଦେଖି ରଜାଙ୍କୁ କହିଲେ, "ମହାରଜ, ଭୟ କରନ୍ତୁ ନାହିଁ । ଶୃଗାଳ ରଜା ସହିତ ଯୁଦ୍ଧ କରିବାର ଭାର ମୋ ଉପରେ ଛାଡ଼ିଦେଇ ଆପଣ ନିଶ୍ଚିନ୍ତରେ ରାଜପୁରୀ ମଧ୍ୟରେ ରହନ୍ତୁ । ଏ ଶୃଗାଳ କାହା ବଳରେ ଏତେ ବଡ଼ ସାହସ କରୁଛି, ତାହା ମୋତେ ଜଣା ।"

ରଜା ଓ ନଗରବାସୀମାନେ ଟିକଏ ଆଶ୍ୱସ୍ତ ହେଲେ । ବୋଧିସତ୍ତ୍ୱ ଗୋଟିଏ ଉଚ୍ଚ ତୋରଣ ଉପରେ ଚଢ଼ି ଶୃଗାଳରଜାକୁ କହିଲେ; "ତୁମକୁ ଆମେ ରାଜ୍ୟ ଛାଡ଼ ନ ଦେଲେ ତୁମେ କପରି ରାଜ୍ୟ ଅଧିକାର କରିବ ?"

ସବ୍ବଦନ୍ତ କହିଲା, "ମୋର ବିରାଟ ସୈନ୍ୟବଳ ଦେଖୁନ୍ତ ? କିନ୍ତୁ କେବଳ ସିଂହମାନଙ୍କ ଦ୍ୱାରା ମୁଁ ଏ ବାରାଣସୀ ନଗରୀ ଅଧିକାର କରିବି । ମୋ ଆଦେଶରେ ସେମାନେ ଏପରି ଭୀଷଣ ଗର୍ଜନ କରିବେ ଯେ ତାହା ଶୁଣି ନଗରବାସୀ ଭୟରେ ପଳାଇବେ । ତେଣିକି ନଗର ଅଧିକାର କରିବା ଅତି ସହଜ ହେବ ।"

ବୋଧିସତ୍ତ୍ୱ ତୋରଣରୁ ଓହ୍ଲାଇ ଆସି ନଗରରେ ଘୋଷଣା ଦେଲେ ଯେ ପ୍ରତ୍ୟେକ ନଗରବାସୀ ମହଣଦ୍ୱାରା ନିଜ ନିଜର କାନକୁ ଏପରି ବନ୍ଦ କରିବେ ଯେପରି କି ସେମାନେ କିଛି ଶୁଣି ପାରିବେ ନାହିଁ । ନଗରବାସୀ ଲୋକଙ୍କର ବୋଧିସତ୍ତ୍ୱଙ୍କ ଉପରେ ବିଶେଷ ଆସ୍ଥା ଥିଲା । ତେଣୁ ସେମାନେ ବିନା ଆପତ୍ତିରେ ସେହିପରି କଲେ । ଏପରି କି ଗୃହପାଳିତ ଜୀବ ଗୋରୁ, କୁକୁର, ବିରାଡ଼ି ପ୍ରଭୃତିଙ୍କର କାନକୁ ମଧ୍ୟ ବନ୍ଦ କରିଦିଆଗଲା ।

କିଛି ସମୟ ପରେ ବୋଧିସତ୍ତ୍ୱ ପୁଣି ତୋରଣ ଉପରକୁ ଉଠି କହିଲେ, "ରେ ସବ୍ବଦନ୍ତ, ତୁ କପରି ଆମର ନଗରକୁ ଅଧିକାର କରିବୁ ବୋଲି ଭାବୁଛୁ ?"

ସବ୍ବଦନ୍ତ ପୁନରାୟ କହିଲା, "ମୋର ଆଦେଶରେ ସିଂହମାନେ ଭୀଷଣ ଗର୍ଜନ କରିବେ । ତାହା ଶୁଣି ଲୋକମାନେ ଭୟରେ ପଳାଇବେ

ସେତେବେଳେ ମୋର ଏହି ପଶୁମାନେ ସେମାନଙ୍କୁ ବଧ କରିବେ । ତେଣିକି ନଗରୀ ଅଧିକାର କରିବାରେ କିଛି ବାଧା ରହିବ ନାହିଁ ।"

ବୋଧିସତ୍ତ୍ୱ କହିଲେ, "ତୋ ଆଦେଶରେ ସିଂହମାନେ ଗର୍ଜିବେ କାହିଁକି ? ସେମାନେ ହେଉଛନ୍ତି ବନର ଶ୍ରେଷ୍ଠ ଜୀବ । ତୋ'ଭଳି ଗୋଟାଏ ବୃଦ୍ଧ ଶୃଗାଳର ଆଦେଶ ମାନିବାର କୌଣସି କାରଣ ନାହିଁ ।"

ସବ୍ବଦନ୍ତ ଗର୍ବରେ ସ୍ଫୀତ ହୋଇ କହିଲା, "ତୁମେ ମୋର ଶକ୍ତି ବିଷୟ ଆଦୌ ଜାଣ ନାହିଁ । ସେଥିପାଇଁ ଏପରି କହୁଛ । ଦେଖୁଛ, ମୁଁ ଓ ମୋର ରାଣୀ ଗୋଟାଏ ସିଂହକୁ ଆସନ କରି ବସିଛୁ । ତାକୁ ଆଦେଶ ଦେଲେ ସେ କପରି ଗର୍ଜନ କରିବ ଦେଖିପାରିବ ।" ଏହା କହି ସେ ସିଂହପୃଷ୍ଠରେ ପଦାଘାତ କରି ଗର୍ଜନ କରିବାକୁ ଆଦେଶ ଦେଲା ।

ସିଂହ ହସ୍ତୀମାନଙ୍କ ମସ୍ତକ ଉପରେ ପାଦ ରଖି ତିନି ଥର ଗର୍ଜନ କଲା । ସହରର ଲୋକମାନଙ୍କ କର୍ଣ୍ଣକୁହର ରୁଦ୍ଧ ହୋଇ ଥିବାରୁ ସେମାନେ ସେହି ଗର୍ଜନ ଶୁଣି ପାରିଲେ ନାହିଁ । ତେଣୁ ସେମାନଙ୍କ ଭିତରେ କୌଣସି ବିଶୃଙ୍ଖଳା ଦେଖାଦେଲା ନାହିଁ । କିନ୍ତୁ ହସ୍ତୀବୃନ୍ଦ ସିଂହର ଗର୍ଜନରେ ଭୀତ ହୋଇ ପଳାଇବାକୁ ବସିଲେ । ଏହା ଫଳରେ ସବ୍ବଦନ୍ତ ଓ ତାହାର ରାଣୀ ସିଂହ ଉପରୁ ଖସି ତଳେ ପଡ଼ିଗଲେ । ହସ୍ତୀମାନଙ୍କ ପଦାଘାତରେ ସେ ଦୁହିଁଙ୍କର ମୃତ୍ୟୁ ଘଟିଲା ଓ ମୃତଦେହ ଦୁଇଟି ମାଟି ସହିତ ମିଶିଗଲା । ପଶୁମାନଙ୍କ ମଧ୍ୟରେ ଘୋର ବିଶୃଙ୍ଖଳା ଜାତ ହେଲା । ସେମାନେ ପଳାଇବାକୁ ଚେଷ୍ଟା କରି ପରସ୍ପରକୁ ମାଡ଼ିଦଳି ଦେଲେ । ଏହା ଫଳରେ ଲକ୍ଷ ଲକ୍ଷ ପଶୁ ପ୍ରାଣ ହରାଇଲେ ।

ତତ୍ପରେ ବୋଧିସତ୍ତ୍ୱଙ୍କ ଆଦେଶରେ ନଗରବାସୀମାନେ କାନରୁ ମର୍ଦ୍ଦନ ବାହାର କରିଦେଲେ । ନଗର ପାଖେ ପଡ଼ିଥିବା ଜୀବମାନଙ୍କ ମାଂସ ନଗର-ବାସୀଙ୍କର ଖାଦ୍ୟରେ ପରିଣତ ହେଲା । ସେମାନେ ଯାହା ଖାଇପାରିଲେ ନାହିଁ, ଭବିଷ୍ୟତରେ ଖାଇବା ପାଇଁ ତାକୁ ଶୁଖାଇ ରଖିଦେଲେ ।

ଅପାତ୍ରରେ କ୍ଷମତା ପଡ଼ିଲେ ଘୋର ଅନିଷ୍ଟ ଘଟିଥାଏ; ସବ୍ବଦନ୍ତ ହେଉଛି ତାର ପ୍ରମାଣ ।

# ଲଟୁକିକ ଜାତକ

ବାରାଣସୀରେ ବ୍ରହ୍ମଦତ୍ତ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ତାହାଙ୍କ ରାଜତ୍ୱ କାଳରେ ବୋଧିସତ୍ତ୍ୱ ବନମଧ୍ୟରେ ମାତାର ଲାଳନପାଳନରେ ଗୋଟିଏ ସୁନ୍ଦର ହସ୍ତୀ ହେଲେ । ତାଙ୍କ ଶରୀର କଜ୍ଜ୍ୱଳ ପରି ଗାଢ଼ କୃଷ୍ଣବର୍ଣ୍ଣ ଥିଲା । ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟରେ ସେ ଅଦ୍ୱିତୀୟ ଥିଲେ । ହିମାଳୟର ପାଦଦେଶରେ ଏକ ବନରେ ସେ ଅଶୀ ସହସ୍ର ହସ୍ତୀଙ୍କର ଯୂଥପତି ହୋଇଥିଲେ ।

ଯେଉଁ ବନ ପ୍ରଦେଶରେ ବୋଧିସତ୍ତ୍ୱ ଓ ତାଙ୍କର ଯୂଥ ବିଚରଣ କରୁଥିଲେ, ତାହାର ଏକ ସ୍ଥାନରେ ଗୋଟିଏ ମାଈ ଚଟକ ପକ୍ଷୀ ଡିମ୍ବ ଦେଇଥିଲା । ଡିମ୍ବ ଗୁଡ଼ିକରୁ ଯଥାସମୟରେ ଗୁଡ଼ିଏ ପକ୍ଷୀଶାବକ ବାହାରିଲେ । କିନ୍ତୁ ସେମାନେ ଉଡ଼ିବାକୁ ସମର୍ଥ ହେବା ପୂର୍ବରୁ ଦିନେ ବୋଧିସତ୍ତ୍ୱ ତାଙ୍କର ଦଳ ସହିତ ସେହି ସ୍ଥାନକୁ ଖାଦ୍ୟ ଅନ୍ୱେଷଣରେ ଆସିଲେ । ସେମାନଙ୍କୁ ଦୂରରୁ ଦେଖି ମାଈ ପକ୍ଷୀଟି ବିଚାର କଲା—ଏମାନେ ଏହି ଆଡ଼କୁ ଆସୁଅଛନ୍ତି । ଏମାନଙ୍କ ପାଦତଳେ ମୋର ଶିଶୁ ସନ୍ତାନଗୁଡ଼ିକ ଧୂଳିସାତ୍ ହୋଇଯିବେ । କିପରି ମୋର ଶିଶୁମାନଙ୍କୁ ରକ୍ଷା କରିବି ? ଦଳପତିଙ୍କୁ ପ୍ରାର୍ଥନା କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ଏହିପରି ବିଚାରି ସେ ବୋଧିସତ୍ତ୍ୱଙ୍କ ନିକଟକୁ ଗଲା ଓ ପକ୍ଷ ଦୁଇଟି ବିସ୍ତାର କରି ପ୍ରଣାମ ଜଣାଇ କହିଲା, "ମହାଭାଗ, ଆପଣ ଅଶୀ ସହସ୍ର ହସ୍ତୀଙ୍କର ଦଳପତି; ବଳରେ ଅଦ୍ୱିତୀୟ । ମୁଁ ସାମାନ୍ୟ ପକ୍ଷୀଟିଏ । ଆପଣ ସମୁଦ୍ର ପରି ବିଶାଳ; ମୁଁ ଜଳବିନ୍ଦୁ ଠାରୁ ମଧ୍ୟ ହୀନ । ଆପଣ ଇଚ୍ଛା କଲେ ମୁହୂର୍ତ୍ତକେ ମୋର ସନ୍ତାନମାନଙ୍କ ସହିତ ମୋତେ ଧ୍ୱଂସ କରିଦେଇ ପାରନ୍ତି । କିନ୍ତୁ ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ । ମୁଁ ଆପଣଙ୍କର ଶରଣ ପଶୁଛି । ମୋତେ ଓ ମୋର ସନ୍ତାନମାନଙ୍କୁ ରକ୍ଷା କରନ୍ତୁ ।"

ଏହା ଶୁଣି ବୋଧିସତ୍ତ୍ୱ କହିଲେ, "ଭଦ୍ରେ, ମୁଁ ତୁମର ଶିଶୁମାନଙ୍କର

ଲବ ମାନ ଅନିଷ୍ଟ କରିବେ ନାହିଁ । କାହାର ଅନିଷ୍ଟ କରିବାକୁ ମୁଁ ମନରେ ସ୍ଥାନ ଦେଇନାହିଁ । ତୁମେ ନିଶ୍ଚିନ୍ତ ରହ । ମୁଁ ତୁମର ସନ୍ତାନମାନଙ୍କୁ ରକ୍ଷା କରିବି । ମୁଁ ତୁମ ଶିଶୁମାନଙ୍କୁ ମୋର ଉଦରତଳେ ରଖି ଛିଡ଼ା ହେବି ଓ ଅନ୍ୟ ହସ୍ତୀମାନେ ମୋ ପାର୍ଶ୍ୱ ଦେଇ ଚାଲିଯିବେ । କେହି ଶିଶୁମାନଙ୍କର କ୍ଷତି କରିବେ ନାହିଁ । ତେବେ ମୋ ଦଳର ଶେଷରେ ଯେଉଁ ହସ୍ତୀଟି ଆସୁଛି, ସେ ନିତାନ୍ତ ଉଦ୍ଧତ । ସେ ମୋ ଆଦେଶ ମାନେ ନାହିଁ । ତାର ପ୍ରକୃତି ଖରାପ । ତେଣୁ ତୁମେ ତାକୁ ମଧ୍ୟ ଅନୁନୟ କରି ଅନୁରୋଧ କରିବ ଯେ ସେ ଯେପରି ତୁମ ସନ୍ତାନମାନଙ୍କ ଉପରେ ପାଦ ନ ପକାଏ ।”

ଏହିପରି କହି ବୋଧିସତ୍ତ୍ୱ ପକ୍ଷୀ ଶାବକମାନଙ୍କୁ ନିଜର ଉଦରତଳେ ରଖି ଛିଡ଼ା ହୋଇ ରହିଲେ । ଅନ୍ୟ ହସ୍ତୀମାନେ ତାଙ୍କ ପାର୍ଶ୍ୱରେ ଚାଲିଗଲେ । ଶେଷରେ ଉଦ୍ଧତ ମତ୍ତହସ୍ତୀଟି ଆସୁଥିବାର ଦେଖି ମାତ୍ର ପକ୍ଷୀ ତାକୁ ପ୍ରଣାମ କରି କହିଲା, “ପ୍ରଭୁ, ଆପଣ ଏ ବନର ରାଜା; ଏ ଅଞ୍ଚଳକୁ ଆପଣ ଆଗମନ କରି ଆମମାନଙ୍କ ପ୍ରତି ଖୁବ୍ ଅନୁଗ୍ରହ କରିଅଛନ୍ତି । ମୁଁ ଗୋଟିଏ ଅତି କ୍ଷୁଦ୍ର ଜୀବ ହେଲେହେଁ ଆପଣଙ୍କୁ ପ୍ରଣତି ଜଣାଇ ଆପଣଙ୍କର ଦୀର୍ଘଜୀବନ କାମନା କରୁଅଛି । ଆପଣଙ୍କ ପାଦପଦ୍ମରେ ମୋର ଏତିକିମାତ୍ର ନିବେଦନ ଯେ ମୋ ପ୍ରତି ଦୟା କରି ମୋର ସନ୍ତାନମାନଙ୍କର କ୍ଷତି କରନ୍ତୁ ନାହିଁ । ଦୁର୍ବଳକୁ ରକ୍ଷା କରିବା ହେଉଛି ବଳବନ୍ତର ଧର୍ମ ।”

ଏହା ଶୁଣି ଏହି ଦୁଷ୍ଟ ହସ୍ତୀର ଗର୍ବ ଆହୁରି ବଢ଼ିଗଲା । ସେ କ୍ରୁଦ୍ଧ ହୋଇ କହିଲା, “କଲେ, ତୋର ସାହସ କମ୍ ନୁହେଁ । ତୁ ମୋତେ ଧର୍ମ ଶିକ୍ଷା-ଦେବାକୁ ବସିଛୁ ! ଆଚ୍ଛା ଦେଖ୍, ମୁଁ କ'ଣ କରୁଛି ।” ଏହା କହି ସେ ଚଟକଶିଶୁମାନଙ୍କୁ ଗୋଟିଏ ପାଦରେ ଦଳିଦେଲା । ମୁହୂର୍ତ୍ତକ ମଧ୍ୟରେ ସେମାନଙ୍କ ରକ୍ତମାଂସ ମାଟିରେ ମିଶିଗଲା । ତତ୍ପରେ ସେ ଦୀର୍ଘ ପଦ-କ୍ଷେପରେ ଗର୍ଜନ କରି ଚାଲିଗଲା ।

ହତଭାଗିନୀ ଚଟକୀ ଗୋଟିଏ ଗଛଡାଳରେ ବସି ତାହାର ଶିଶୁମାନଙ୍କର ଏହି ଅବସ୍ଥା ଦେଖିଲା । କେତେ ସମୟ ପର୍ଯ୍ୟନ୍ତ ସେ ଦୁଃଖରେ ଲୁହ ଗଡ଼ାଇ

କାନ୍ଦିଲା । ସେତେବେଳେ ସେ କହିଲା, "ରେ ଦୁଷ୍ଟ, ତୁ ଦେହର ବଳରେ ମତ୍ତ ହୋଇ ମୋର ସନ୍ତାନମାନଙ୍କୁ ନଷ୍ଟ କଲୁ । ମୋର ଦେହର ବଳ ନାହିଁ ସିନା; ମନର ବଳ ତ ଅଛି । ଦେଖିବୁ, ମୁଁ ପ୍ରତିହିଂସା ନ ନେଇ ଛାଡ଼ିବି ନାହିଁ ।"

ପରେ ସେ ଗୋଟିଏ କୁଆର କିଛି ଉପକାର କରିଥିଲା । ତାହା ପାଖକୁ ଯାଇ ସେ ସମସ୍ତ ଘଟଣା ବର୍ଣ୍ଣନା କରି କହିଲା, "ମୋର ଏ ବିପଦବେଳେ ତୁମେ ଟିକିଏ ସାହାଯ୍ୟ କର ।"

କୁଆ କହିଲା, "ମୁଁ ତୁମର କିଛି ଉପକାର କରିପାରିଲେ ଧନ୍ୟ ହେବି । କୁହ, ମୋତେ କଅଣ କରିବାକୁ ହେବ ।"

ଚଟକା କହିଲା, "ତୁମକୁ କିଛି କଠିନ କାମ କରିବାକୁ ମୁଁ କହୁନାହିଁ । ସେ ଦୁଷ୍ଟ ହାତୀ ଶୋଇଥିଲାବେଳେ ତୁମେ ଯାଇ ତାର ଆଖି ଦୁଇଟିକୁ ଖାଡ଼ି ଦେବ । ତୁମର ତୀକ୍ଷ୍ଣ ଥଣ୍ଟରେ ଆଖି ଦୁଇଟା ଖାଡ଼ିଦେବା ଅତି ସହଜ ।"

କୁଆ ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇଗଲା ।

ଗୋଟିଏ ମାଛି ଚଟକାର ବନ୍ଧୁ ଥିଲା । ସେ ମାଛିକୁ ସବୁ କଥା ଜଣାଇ କହିଲା, "ବନ୍ଧୁ ତୁମେ ମୋତେ ସାହାଯ୍ୟ କର । ହାତୀ ଅନ୍ଧ ହୋଇଗଲେ ତୁମେ ତା ଆଖିରେ କିଛି ମଳତ୍ୟାଗ କରିଦେବ । ତାହାହେଲେ ସେଥିରେ ପୋକ ପଡ଼ିଯିବେ ।"

ମାଛି ସେହିପରି କରିବ ବୋଲି ପ୍ରତିଶ୍ରୁତି ଦେଲା ।

ଶେଷରେ ଚଟକା ତାର ଅନ୍ୟ ଏକ ବନ୍ଧୁ ବେଙ୍ଗକୁ ସମସ୍ତ ଘଟଣା କହି ସାହାଯ୍ୟ ପ୍ରାର୍ଥନା କଲା । ବେଙ୍ଗ ପଚାରିଲା, "ମୁଁ ତୁମ ପାଇଁ କଅଣ କରିବି କହ । ତୁମକୁ ମୁଁ ଆନନ୍ଦରେ ସାହାଯ୍ୟ କରିବି ।" ଚଟକା କହିଲା, "ସେ ଦୁଷ୍ଟ ହାତୀ ଅନ୍ଧ ହେଲାପରେ ପାଣି ପିଇବାକୁ ଏଣେ ତେଣେ ଦଉଡ଼ିବ । ସେତେବେଳେ ତୁମେ ପାହାଡ଼ ଉପରେ ଚଢ଼ି ରାବିବ । ସେହିଠାରେ କୌଣସି ଜଳାଶୟ ଅଛିବୋଲି ମନେକରି ଅନ୍ଧ ହାତୀ ପାହାଡ଼ ଉପରକୁ ଉଠିଯିବ । କିଛି ସମୟ ପରେ ତୁମେ ପାହାଡ଼ ତଳକୁ ଆସି ପୁଣି ରାବିବ । ତେଣୁ ହାତୀ

ପାଣି ପାଇଁ ପାହାଡ଼ ତଳକୁ ଆସିବାକୁ ଚେଷ୍ଟା କରିବ । ମାତ୍ର ଅନ୍ଧ ହୋଇ ଥିବାରୁ ବାଟ ଦେଖି ନ ପାରି ଗଡ଼ିପଡ଼ି ମରିବ ।''

ତହୁଁ ସୁବିଧା ଦେଖି କାଉ ହାତୀର ଆଖି ଦୁଇଟି ତାଡ଼ିଦେଲା । ମାଛି ସେଥିରେ ବିଷ୍ଠା ତ୍ୟାଗ କରିବାରୁ ପୋକ ହୋଇଗଲେ । ତୃଷାରେ ଆକୁଳ ହୋଇ ସେ ବେଙ୍ଗର ସ୍ୱରକୁ ଅନୁସରଣ କରି ପାହାଡ଼ ଉପରକୁ ଉଠିଲା । ଏହା ପରେ ବେଙ୍ଗ ପାହାଡ଼ ତଳକୁ ଓହ୍ଲାଇ ଆସି ପୁଣି ରାବିଲା । ହାତୀ ସେଠାରେ ପାଣି ଅଛି ବୋଲି ଓହ୍ଲାଇବାକୁ ବସିଲା । ମାତ୍ର ଗଡ଼ାଣିଆ ପାହାଡ଼ରେ ବାଟ ଦେଖି ନ ପାରି ସେ ଗଡ଼ିପଡ଼ି ତଳେ ପଡ଼ିଗଲା । ସେତେ-ବେଳକୁ ତାର ପିଣ୍ଡରେ ପ୍ରାଣ ନ ଥିଲା ।

ଚଟକା ହାତୀର ମରଣ ଦେଖି ଆନନ୍ଦିତ ହୋଇ କହିଲା, ''ଯେମିତି କର୍ମ କଲୁ ସେମିତି ଫଳ ପାଇଲୁ ।''

## ପଦକୁଶଳ ମାଣବ ଜାତକ

ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କର ଏକ ରାଣୀ ଅନ୍ୟ ଜଣେ ପୁରୁଷ ସହିତ ପାପ ପ୍ରଣୟରେ ରତ ଥିଲେ । ରାଜା ତାହା ଶୁଣିପାରି ତାଙ୍କୁ ପଚାରିବାରୁ ସେ ଅସ୍ୱୀକାର କରି କହିଲେ, ''ଯଦି ମୁଁ ଆପଣଙ୍କ ଛଡ଼ା ଅନ୍ୟ କୌଣସି ପୁରୁଷକୁ ହୃଦୟରେ ସ୍ଥାନ ଦେଇଥାଏଁ, ତେବେ ପରଜନ୍ମରେ ମୁଁ ରାକ୍ଷସୀ-ଜନ୍ମ ପାଇବି, ମୋର ଘୋଡ଼ା ପରି ମୁହଁ ହେବ ।''

ତାଙ୍କର ମୃତ୍ୟୁ ହେବା ପରେ ସେ ଅଶ୍ୱମୁଖୀ ରାକ୍ଷସୀ ହୋଇ ଜନ୍ମଲାଭ କଲେ । ଗୋଟିଏ ବୃହତ୍ ବନମଧ୍ୟରେ ପାହାଡ଼ର ଗୁହା ମଧ୍ୟରେ ରାକ୍ଷସୀ ବାସକରୁଥିଲା । ଯେଉଁ ଲୋକେ ଏହି ବନ ମଧ୍ୟରେ ଯାତାୟାତ ହେଉଥିଲେ ସେମାନଙ୍କୁ ଧରି ସେ ଖାଉଥିଲା । ତାକୁ ଜଣେ ଋଷି ଶାପ ଦେଇଥିଲେ ଯେ

ସେ ବନର କେବଳ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ବିଚରଣ କରିପାରିବ । ଏହି ସୀମାର ଦୈର୍ଘ୍ୟ ତିରିଶ ଯୋଜନ ଓ ବିସ୍ତାର ପାଞ୍ଚଯୋଜନ ଥିଲା । ରାକ୍ଷସୀ ଏହି ସୀମାକୁ ଅତିକ୍ରମ କରି ଯାଇପାରୁ ନ ଥିଲା ।

ଥରେ ଜଣେ ଧନଶାଳୀ ବ୍ରାହ୍ମଣ କେତେକ ଅନୁଚର ସହିତ ସେହି ବନ ପଥରେ ଯାଉଥିଲେ । ରାକ୍ଷସୀ ବ୍ରାହ୍ମଣଙ୍କୁ ଦେଖିବାମାତ୍ରେ ହେ଼ଡ଼ାରବ କରି ତାହାଙ୍କୁ ଖାଇବାକୁ ଧାଇଁଲା । ଅନୁଚରମାନେ ଭୟରେ କିଏ କୁଆଡ଼େ ପଳାଇଗଲେ । ରାକ୍ଷସୀ ପବନବେଗରେ ଧାଇଁଯାଇ ବ୍ରାହ୍ମଣଙ୍କୁ ପିଠିରେ ପକାଇ ନିଜ ଗୁହାକୁ ଆସିଲା । ଏବେ ବ୍ରାହ୍ମଣଙ୍କର ସୁନ୍ଦର ରୂପ ଦେଖି ସେ କାମପୀଡ଼ିତା ହୋଇ ତାଙ୍କୁ ଖାଇବା ପରିବର୍ତ୍ତେ ସ୍ୱାମୀପଦରେ ବରଣ କଲା । ବ୍ରାହ୍ମଣ ମଧ୍ୟ ଗତ୍ୟନ୍ତର ନ ଦେଖି ରାକ୍ଷସୀକୁ ପତ୍ନୀରୂପେ ଗ୍ରହଣ କରି ତାହା ସହିତ ଗହ୍ୱର ମଧ୍ୟରେ କାଳଯାପନ କରିବାକୁ ଲାଗିଲେ । ରାକ୍ଷସୀ ଯେଉଁ ମନୁଷ୍ୟମାନଙ୍କୁ ବଧ କରୁଥିଲା, ସେମାନଙ୍କର ପରିଧେୟ ବସ୍ତ୍ର ଓ ସେମାନଙ୍କ ପାଖରେ ଥିବା ଖାଦ୍ୟପଦାର୍ଥ ନେଇ ବ୍ରାହ୍ମଣଙ୍କୁ ଦେଉଥିଲା ଓ ନିଜେ ସେମାନଙ୍କର ମାଂସ ଖାଉଥିଲା । ରାକ୍ଷସୀ ବାହାରକୁ ଗଲାବେଳେ ବ୍ରାହ୍ମଣଙ୍କୁ ଗହ୍ୱରଭିତରେ ରଖି ଗୋଟିଏ ପ୍ରକାଣ୍ଡ ପ୍ରସ୍ତର ସାହାଯ୍ୟରେ ଗହ୍ୱରର ଦ୍ୱାର ବନ୍ଦ କରି ଦେଇ ଯାଉଥିଲା । ତେଣୁ ବ୍ରାହ୍ମଣ ଏକପ୍ରକାର ବନ୍ଦୀ-ଜୀବନ ଯାପନ କରୁଥିଲେ । ପୁଣି ମନୁଷ୍ୟସମାଜକୁ ଫେରିଯିବାର ଆଶା ତାଙ୍କ ମନରୁ ତିରୋହିତ ହୋଇଗଲା ।

ଏହିପରି ବ୍ରାହ୍ମଣ ଓ ରାକ୍ଷସୀ କେତେକାଳଯାଏ ଦାମ୍ପତ୍ୟ ଜୀବନ ଯାପନ କଲା ପରେ ବୋଧିସତ୍ତ୍ୱ ରାକ୍ଷସୀଗର୍ଭରୁ ଜନ୍ମଗ୍ରହଣକଲେ । ରାକ୍ଷସୀ ଅନ୍ୟ ମନୁଷ୍ୟମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରି ଭୋଜନ କରୁଥିଲେ ହେଁ ବ୍ରାହ୍ମଣ ଓ ବୋଧିସତ୍ତ୍ୱଙ୍କ ପ୍ରତି ତାର ଅସୀମ ମମତା ଥିଲା । ଦୁହିଁଙ୍କର ଖାଦ୍ୟପେୟ ପ୍ରଭୃତି ଯୋଗାଇ ଦେବାରେ ତାର ଅତ୍ୟନ୍ତ ଆଗ୍ରହ ଥିଲା ଓ ସେ ଅବିଳମ୍ବେ ସେମାନଙ୍କର ଇଚ୍ଛା ପୂରଣ କରୁଥିଲା । କିନ୍ତୁ ପିତା ଓ ପୁତ୍ର ଦୁହିଁଙ୍କୁ ସେ ଗହ୍ୱର ବାହାରକୁ ଯିବାକୁ ଦେଉ ନ ଥିଲା ।

କ୍ରମେ ବୋଧିସତ୍ତ୍ୱଙ୍କର ବୟୋବୃଦ୍ଧି ସଙ୍ଗେ ଶରୀରର ଶକ୍ତି ମଧ୍ୟ ବୃଦ୍ଧି-ପାଇଲା । ସେ ପିତାଙ୍କଠାରୁ ବୁଝିଲେ ଯେ ବାହାରେ ଆଲୁଅକୁ ଯିବା ତାଙ୍କର ଇଚ୍ଛା । ତହୁଁ ବୋଧିସତ୍ତ୍ୱ ଗହ୍ୱରର ଦ୍ୱାରଦେଶରୁ ପଥର ଖଣ୍ଡିକ ବାହାର କରିଦେଲେ ଓ ବ୍ରାହ୍ମଣ ଆନନ୍ଦରେ ବାହାରେ ବୁଲିଲେ । ସନ୍ଧ୍ୟା-ବେଳକୁ ରାକ୍ଷସୀ ଫେରିଆସି ସ୍ୱାମୀଙ୍କୁ ବାହାରେ ଦେଖି ପଚାରିଲା, "ଦ୍ୱାର-ମୁହଁରୁ କିଏ ପଥର କାଢ଼ିଲା ?" ବୋଧିସତ୍ତ୍ୱ କହିଲେ, "ମାଆ, ଅନ୍ଧାରରେ ରହିବାକୁ ଆମକୁ ଭଲ ଲାଗୁ ନାହିଁ, ସେଥିପାଇଁ ଦୁଆର ଫିଟାଇ ଆମେ ବାହାରେ ବୁଲୁଥିଲୁ । ରାକ୍ଷସୀ ମନେ ମନେ ବିରକ୍ତ ହେଲା, କିନ୍ତୁ ସନ୍ତାନ ପ୍ରତି ଅତିରିକ୍ତ ସ୍ନେହ ହେତୁରୁ କିଛି କହିଲା ନାହିଁ ।

ଦିନେ ରାକ୍ଷସୀ ଗୁହାରେ ନ ଥିବା ସମୟରେ ବୋଧିସତ୍ତ୍ୱ ବ୍ରାହ୍ମଣଙ୍କୁ ପଚାରିଲେ, "ବାପା, ତୁମ ମୁହଁ ଯେପରି, ମୋର ମାଆଙ୍କ ମୁହଁ ସେପରି ନୁହେଁ । ଏଥିର କାରଣ କଅଣ ?" ବ୍ରାହ୍ମଣ କହିଲେ, "ବତ୍ସ, ମୁଁ ହେଉଛି ମନୁଷ୍ୟ, ତୁ ମଧ୍ୟ ମନୁଷ୍ୟ; ତେଣୁ ଆମର ମୁହଁ ମନୁଷ୍ୟର ମୁହଁ ପରି । କିନ୍ତୁ ତୋର ମାଆ ମନୁଷ୍ୟ ନୁହେ । ସେ ଏକ ରାକ୍ଷସୀ । ଆମେ ଭାତ ଡାଲି ପ୍ରଭୃତି ଖାଉଛୁ; କିନ୍ତୁ ତୋର ମାଆ ମନୁଷ୍ୟମାଂସ ଖାଏ । ତେଣୁ ତାର ମୁହଁ ଘୋଡ଼ା ମୁହଁ ପରି ।" ବୋଧିସତ୍ତ୍ୱ ପୁଣି କହିଲେ, "ତାହାହେଲେ ଆମେ ଏଠାରେ ରହିଥିବା କାହିଁକି ? ଚାଲ, ଆମେ ଦୁହେଁ ଏଠାରୁ ପଳାଇଯାଇ ମନୁଷ୍ୟମାନଙ୍କ ସଙ୍ଗରେ ରହିବା ।" ବ୍ରାହ୍ମଣ କହିଲେ, "ସେ କଥା ସତ; କିନ୍ତୁ ଆମେ ଏଠାରୁ ପଳାଇବାକୁ ଚେଷ୍ଟା କଲେ ତୋର ମାଆ ଆମ ଦୁହିଁଙ୍କୁ ମାରି ଖାଇଯିବ ।" ବୋଧିସତ୍ତ୍ୱ କହିଲେ, "ବାପା, ତୁମେ ଭୟ କରୁଛ କାହିଁକି ? ତୁମକୁ ନେଇ ମନୁଷ୍ୟସମାଜରେ ପହଞ୍ଚାଇ ଦେବାର ଦାୟିତ୍ୱ ମୋ ଉପରେ ରହିଲା ।"

ଏ ଘଟଣାର ପରଦିନ ରାକ୍ଷସୀ ଚରିବାକୁ ଗଲା । ବୋଧିସତ୍ତ୍ୱ ଦ୍ୱାରମୁହଁରୁ ପଥର କାଢ଼ି ବାପାଙ୍କୁ କାନ୍ଧରେ ବସାଇ ଚାଲିଲେ । ଏଣେ ରାକ୍ଷସୀ ଫେରି-ଆସି ଦେଖିଲା ବାପପୁଅ ଦୁହେଁ ଯାକ ଗୁହାରେ ନାହାନ୍ତି । ସେ ଗନ୍ଧ ବାରି

ପବନବେଗରେ ଯାଇ ବାପପୁଅ ଦୁହିଁଙ୍କୁ ଧରିଲା । ସେ ବ୍ରାହ୍ମଣଙ୍କୁ ପଚାରିଲା, "ତୁମେ ପଳାଇଯାଉଥିଲ କାହିଁକି ? ତୁମର କୌଣସି ଅଭାବ ଅଛି କି ? ଯଦି ଥାଏ, କୁହ; ମୁଁ ନିଶ୍ଚୟ ତାହା ପୂରଣ କରିବି ।" ବ୍ରାହ୍ମଣ କହିଲେ, "ନା, ମୋର କିଛି ଅଭାବ ନାହିଁ । ପୁଅ ମୋତେ ଏଠାକୁ ଆଣିଥିଲା ।"

ରାକ୍ଷସୀର ମନରେ ବେଶି ସନ୍ଦେହ ହେଲା; ବାପପୁଅ ଦୁହିଁଙ୍କ ଉପରେ ରାଗ ହେଲା ମଧ୍ୟ । ମାତ୍ର ପୁଅ ପ୍ରତି ଅତ୍ୟଧିକ ସ୍ନେହ ଥିବାରୁ ସେ ଆଉ କିଛି ନ କହି ଦୁହିଁଙ୍କୁ ପୁଣି ଗୁହାଭିତରକୁ ନେଇ ଆସିଲା ।

ପୁଣି କିଛିଦିନ ଗଲା । ବୋଧିସତ୍ତ୍ୱ ମନେ ମନେ ଭାବିଲେ, "ବୋଧହୁଏ, ରାକ୍ଷସୀ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ଭିତରେ ଚଳପ୍ରଚଳ ହୁଏ । ତାହା ନୋହିଲେ ସେ ଏ ସ୍ଥାନ ଛାଡ଼ି ଦୂରକୁ ଯାଆନ୍ତା ନାହିଁ କାହିଁକି ?" ଏହି ସନ୍ଦେହ ଦୂର କରିବା ପାଇଁ ସେ ଦିନେ ଅତି ଆଦର ଦେଖାଇ ମାଆକୁ କହିଲେ, "ମାଆ, ତୁମକୁ ଗୋଟିଏ କଥା ପଚାରିବାକୁ ଅଛି । ମାଆର ସମ୍ପତ୍ତିରେ ପୁଅର ଅଧିକାର, ଏ କଥା ଜଣାଶୁଣା । ଏ ବଣ ଭିତରେ କେତେଦୂର ପର୍ଯ୍ୟନ୍ତ ତୁମର ଅଧିକାର ଅଛି, ଏ କଥା ଜାଣିଲେ ମୁଁ ମଧ୍ୟ ସେହି ସୀମାଭିତରେ ରହିବି ।" ରାକ୍ଷସୀ ବୋଧିସତ୍ତ୍ୱଙ୍କର ପ୍ରକୃତ ଉଦ୍ଦେଶ୍ୟ ବୁଝି ନ ପାରି ତାର ଚଳପ୍ରଚଳ ଜାଗାଟିକୁ ଦେଖାଇଦେଇ କହିଲା, ଏହି ଅଞ୍ଚଳଟି ମୋର; ଏହାର ଲମ୍ବ ତିରିଶଯୋଜନ; ଓସାର ପାଞ୍ଚଯୋଜନ । ଏହାକୁ ପାରିହୋଇ ଯିବାକୁ ମୋତେ ମନା ଅଛି ।"

ଏହି ଘଟଣାର ଚାରି ପାଞ୍ଚଦିନ ପରେ ରାକ୍ଷସୀ ଗୁହାରେ ନ ଥିଲାବେଳେ ବୋଧିସତ୍ତ୍ୱ ପିତାଙ୍କୁ କାନ୍ଧରେ ବସାଇ ପବନ ବେଗରେ ପଳାଇଲେ । ବହୁ କଷ୍ଟରେ ସେ ଗୋଟିଏ ନଦୀକୂଳରେ ପହଞ୍ଚିଲେ । ଏହିଠାରେ ରାକ୍ଷସୀର ଅଧିକାରଭୁକ୍ତ ଅଞ୍ଚଳର ସୀମା ।

ଏଣେ ରାକ୍ଷସୀ ଫେରିଆସି ବାପପୁଅଙ୍କୁ ନ ଦେଖି ସେମାନଙ୍କୁ ଖୋଜିବା ପାଇଁ ଦଉଡ଼ିଲା । ଦୂରରୁ ତାକୁ ଦେଖିପାରି ବୋଧିସତ୍ତ୍ୱ ପିତାଙ୍କୁ ନେଇ ନଦୀର ମଧ୍ୟଭାଗକୁ ଚାଲିଗଲେ । ନଦୀ ଭିତରକୁ ଯିବାପାଇଁ ରାକ୍ଷସୀକୁ ନିଷେଧ

ଥିବାରୁ ସେ କୂଳରେ ଥାଇ କହିଲା, "ପୁଅ, ତୁ କୁଆଡ଼େ ଯାଉଛୁ ? ବାପାଙ୍କୁ ଘେନି ଫେରିଆ । ମୋର ଦୋଷ କଅଣ କହିଲୁ ? ତୋର କଅଣ ଅସୁବିଧା ହେଲା ଯେ ପଳାଇ ଯାଉଛୁ ? ଆ, ଆମ ଘରକୁ ଯିବା ।"
ବୋଧିସତ୍ତ୍ୱ କୋମଳ ସ୍ୱରରେ କହିଲେ, "ମାଆ, ଆମର କିଛି ଅସୁବିଧା ନାହିଁ । ତୁମେ ଆମର ସବୁ ଅଭାବ ମେଣ୍ଟାଇ ଆସିଛ । କିନ୍ତୁ ଆମେ ହେଉଛୁ ମନୁଷ୍ୟ, ତୁମେ ହେଉଛ ରାକ୍ଷସୀ । ମନୁଷ୍ୟ ଓ ରାକ୍ଷସ ଚିରକାଳ ଏକାଠି ରହିପାରିବା ଅସମ୍ଭବ । ତୁମେ ଘରକୁ ଯାଅ; ଆମେ ଫେରି ପାରିବୁ ନାହିଁ ।"

ରାକ୍ଷସୀ ଦେଖିଲା ଯେ ବ୍ରାହ୍ମଣ ଓ ବୋଧିସତ୍ତ୍ୱ କୌଣସିମତେ ଫେରିବେ ନାହିଁ । ତଥାପି ପୁଅ ପ୍ରତି ସ୍ନେହବଶତଃ ସେ କହିଲା, "ପୁଅ, ତୁ ସଂସାର-କଥା କିଛି ଜାଣୁନାହିଁ । ମନୁଷ୍ୟସମାଜରେ ଚଳିବାକୁ ହେଲେ କିଛି ବିଦ୍ୟା ଜାଣିଥିବା ଦରକାର । ସେହି ବିଦ୍ୟାବଳରେ ଅର୍ଥ ଉପାର୍ଜ୍ଜନ କରି ପେଟ ପୋଷିବାକୁ ହେବ । ତୁ ସେପରି କୌଣସି ବିଦ୍ୟା ଶିଖିନାହୁଁ । ମୋ ପାଖରେ ଗୋଟିଏ ମଣି ଅଛି । ଏହାର ଶକ୍ତି ଅଦ୍ଭୁତ । ଏହାକୁ ଧରିଥିଲେ ତୁ ଯେ କୌଣସି ଲୋକର ପାଦଚିହ୍ନକୁ ଅନୁସରଣ କରି ପାରିବୁ । ଏପରି କି ବାରବର୍ଷ ପୂର୍ବେ ଯାଇଥିବା ଲୋକର ପାଦଚିହ୍ନ ତୁ ଦେଖି ପାରିବୁ । ମୁଁ ତୋତେ ସେହି ମଣିଟି ଦେଉଛି ।" ଏହା କହି ସେ ମଣିଟି ବଢ଼ାଇ ଦେଲା । ବୋଧିସତ୍ତ୍ୱ କୂଳକୁ ନ ଯାଇ ସେହି ନଦୀ ଭିତରେ ରହି ମାଆଠାରୁ ମଣିଟି ଗ୍ରହଣ କଲେ ଓ ପ୍ରଣାମ କରି କହିଲେ, "ମାଆ, ବିଦାୟ ଦିଅ । ଆଉ ଏ ଜନ୍ମରେ ଦେଖାହେବ କି ନା ସନ୍ଦେହ ।"

ରାକ୍ଷସୀର ହୃଦୟ ଦୁଃଖରେ ବିଦୀର୍ଣ୍ଣ ହୋଇଗଲା । ସେ କହି ଉଠିଲା— "ତୋତେ ଛାଡ଼ି ମୁଁ ଜୀବନ ଧରି ରହିବି କିପରି ?" ସଙ୍ଗେ ସଙ୍ଗେ ସେ ତଳେ ପଡ଼ିଯାଇ ପ୍ରାଣ ହରାଇଲା ।

ପିତା ଓ ପୁତ୍ର ନଦୀକୂଳକୁ ଯାଇ ଯଥାବିଧି ରାକ୍ଷସୀର ଶବ ସଂସ୍କାର କଲେ ଓ ଶ୍ରାଦ୍ଧକ୍ରିୟା ସମ୍ପାଦନ କରି ବାରଣସୀରେ ଉପସ୍ଥିତ ହେଲେ ।

ବୋଧିସତ୍ତ୍ୱ ରାଜାଙ୍କ ନିକଟରେ କର୍ମପ୍ରାର୍ଥୀ ହେବାରୁ ରାଜା ପଚାରିଲେ, "ତୁମେ କି ବିଦ୍ୟା ଜାଣ ? ତୁମର ବେତନ କେତେ ?" ବୋଧିସତ୍ତ୍ୱ କହିଲେ, "ମହାରାଜ, ମୋର ଗୋଟିଏ ଅଦ୍ଭୁତ ଶକ୍ତି ଅଛି । କୌଣସି ଦ୍ରବ୍ୟ ବାର-ବର୍ଷ ତଳେ ଚୋରି ଯାଇଥିଲେ ମଧ୍ୟ ମୁଁ ତାକୁ ବାହାର କରି ପାରିବି; ଚୋର ଧରିପିବ । ମୋର ବେତନ ଦିନକୁ ଏକ ସହସ୍ର ମୁଦ୍ରା ।" ରାଜା ଏଥିରେ ସ୍ୱୀକୃତ ହୋଇ ବୋଧିସତ୍ତ୍ୱଙ୍କୁ ଦୈନିକ ଏକ ସହସ୍ର ମୁଦ୍ରା ବେତନରେ ନିଯୁକ୍ତ କଲେ । କିଛି ଦିନ ପରେ ରାଜପୁରୋହିତ ରାଜାଙ୍କୁ କହିଲେ, "ମହାରାଜ, ଆପଣ ଏ ଲୋକଟି ଯାହା କହିଲା, ସେଥିରେ ବିଶ୍ୱାସ କରି ତାକୁ ରାଜକାର୍ଯ୍ୟରେ ନିଯୁକ୍ତ କଲେ; ତାକୁ ଦୈନିକ ଏତେଗୁଡ଼ିଏ ମୁଦ୍ରା ଦେଉଅଛନ୍ତି । କିନ୍ତୁ ପ୍ରକୃତରେ ସେ କୌଣସି ବିଦ୍ୟା ଜାଣେ କି ନା ତାହା ବୁଝିଲେ ନାହିଁ । ଲୋକଟା ବସି ବସି ଟଙ୍କା ନେଉଛି । ମୋ ମତରେ ତାହା-ଠାରେ ଶକ୍ତି କିଛି ଅଛି କି ନା ପରୀକ୍ଷା କରି ଦେଖିବା ଉଚିତ ।" ରାଜା ଏହି ପ୍ରସ୍ତାବ ଯୁକ୍ତିଯୁକ୍ତ ମନେ କରି ବୋଧିସତ୍ତ୍ୱଙ୍କର ବିଦ୍ୟା ପରୀକ୍ଷା କରିବାକୁ ସ୍ଥିର କଲେ ।

ରାଜା ବିଭିନ୍ନ ରାଜକୋଷର ଅଧ୍ୟକ୍ଷମାନଙ୍କଠାରୁ ବହୁମୂଲ୍ୟ ରତ୍ନମାନ ଆଣି ପ୍ରାସାଦରୁ ତଳକୁ ଓହ୍ଲାଇ ପ୍ରାସାଦ ଚାରିପାଖେ ତିନିଥର ବୁଲିଗଲେ । ତାହାପରେ ପ୍ରାସାଦର ପ୍ରାଚୀରରେ ଗୋଟିଏ ନିଶୁଣି ଲଗାଇ ବାହାରକୁ ଗଲେ ଓ ଦରବାରଗୃହରେ ପ୍ରବେଶ କଲେ । ସେଠାରେ କିଛି ସମୟ ବସିବା ପରେ ସେ ପୁନର୍ବାର ନିଶୁଣି ସାହାଯ୍ୟରେ ଅନ୍ତଃପୁରକୁ ଆସିଲେ । ସେଠାରେ ଗୋଟିଏ ପୁଷ୍କରିଣୀ ଥିଲା । ରାଜା ଏହି ପୁଷ୍କରିଣୀକୁ ତିନିଥର ପ୍ରଦକ୍ଷିଣ କରି ରତ୍ନଗୁଡ଼ିକୁ ପୁଷ୍କରିଣୀ ଜଳରେ ପକାଇଦେଲେ ଓ ପୂର୍ବପରି ପ୍ରାସାଦ ଉପରକୁ ଉଠିଗଲେ । ରାଜାଙ୍କର ପରାମର୍ଶକ୍ରମେ କୋଷାଧ୍ୟକ୍ଷମାନେ ସକାଳୁ ରାଜାଙ୍କୁ ଜଣାଇଲେ, "ମହାରାଜ, ଗତ ରାତିରେ ରାଜଭଣ୍ଡାରରୁ ବହୁ ରତ୍ନ ଚୋରି ଯାଇଅଛି ।" ମୁହୂର୍ତ୍ତକ ମଧ୍ୟରେ ଏହି ସମ୍ବାଦ ନଗର ମଧ୍ୟରେ ରାଷ୍ଟ୍ର ହୋଇଗଲା । ରାଜା କିଛି ନ ଜାଣିଲା ପରି ବୋଧିସତ୍ତ୍ୱଙ୍କୁ

ଉକାଇ କହିଲେ, "ଦେଖ, ଆମ ରାଜକୋଷରୁ ଗୁଡ଼ିଏ ବହୁମୂଲ୍ୟ ରତ୍ନ ଚୋର ଘାଇଅଛି । ତାହାକୁ ଉଦ୍ଧାର କରିବାକୁ ହେବ ।"ବୋଧିସତ୍ତ୍ୱ ଉତ୍ତର କଲେ, "ମହାରାଜ, ବାରବର୍ଷ ତଳର ପାଦ ଚିହ୍ନ ଦେଖି ମୁଁ ଚୋର ଜିନିଷ ବାହାର କରି ପାରିବି । କାଲି ଚୋରି ଯାଇଥିବା ଜିନିଷ ଅକ୍ଳେଶରେ ମିଳି ପାରିବ । ଆପଣ ଚିନ୍ତା କରନ୍ତୁ ନାହିଁ ।" ଏହା କହି ସେ ମଣିଟି ବାହାର କରି ମନ୍ତ୍ର-ପାଠ କରିବାରୁ ତାଙ୍କୁ ଦୁଇଜଣ ଲୋକଙ୍କର ପାଦଚିହ୍ନ ଦେଖାଗଲା । ସେ ଉକ୍ତ ପାଦ ଚିହ୍ନକୁ ଅନୁସରଣ କରି ରାଜକୋଷଠାରୁ ବାହାରି ପ୍ରାସାଦର ଗୁମ୍ଭରୁ ଓହ୍ଲାଇଲେ ଓ ପ୍ରାସାଦକୁ ତିନଥର ପ୍ରଦକ୍ଷିଣ କଲାପରେ ପ୍ରାଚୀର ପାଖରେ ପହଞ୍ଚିଲେ । ପ୍ରାଚୀର ଉପରକୁ ସିଡ଼ିରେ ଉଠି ପୁଣି ଆରପାଖେ ଓହ୍ଲାଇ ଦରବାର ଗୃହକୁ ଗଲେ । ସେଠାରୁ ପୁଣି ପ୍ରାସାଦକୁ ଆସି ସେଠାରୁ ଅନ୍ତଃପୁରକୁ ଗଲେ । ଅନ୍ତଃପୁରରୁ ଆସି ସେ ପୁଷ୍କରିଣୀକୁ ତିନଥର ପ୍ରଦକ୍ଷିଣ କରି କହିଲେ, "ମହାରାଜ, ଦୁଇଜଣ ଚୋର ଏହିଠାରେ ପୁଷ୍କରିଣୀରେ ପ୍ରବେଶ କରିଥିଲେ ।" ଏହା କହି ସେ ପୁଷ୍କରିଣୀ ଭିତରକୁ ଯାଇ ରତ୍ନଟିକ ବାହାର କରି ଆଣି ରାଜାଙ୍କୁ ଦେଲେ । ରାଜା ମନେ ମନେ ବିସ୍ମିତ ହୋଇ କହିଲେ, "ରତ୍ନ ଯେ ମିଳିଗଲା, ତାହି ଆନନ୍ଦର ବିଷୟ । ଏବେ ସେ ଚୋର ଦୁଇଜଣ କିଏ ଜଣାଅ ।"

ବୋଧିସତ୍ତ୍ୱ କହିଲେ, "ମହାରାଜ, ଚୋର ଦୁଇଜଣ ସାଧାରଣ ଲୋକ ନୁହନ୍ତି; ସେମାନେ ରାଜ୍ୟର ପ୍ରତିଷ୍ଠିତ କ୍ଷମତାଶାଳୀ ବ୍ୟକ୍ତି । ମୁଁ ଯେଉଁ ବାଟେ ଯାଇ ରତ୍ନର ଉଦ୍ଧାର କଲି ସେମାନେ ଠିକ୍ ସେହି ବାଟେ ଯାଇଥିଲେ ।" ରାଜା ଭାବିଲେ, "ଲୋକଟା ପାଦଚିହ୍ନ ଦେଖି ଜିନିଷ ବାହାର କରିଦେଲା ସତ; କିନ୍ତୁ କିଏ ଚୋରି କରିଛି ତାହା କହି ପାରିବ ନାହିଁ ।" ତେଣୁ ରାଜା କହିଲେ, "ଜିନିଷ ମିଳିଲା ସତ; କିନ୍ତୁ ଚୋରକୁ ଧରିବା ଆମର ବେଶି ଦରକାର । ଚୋରମାନଙ୍କୁ ଆଣି ଆମ ପାଖରେ ହାଜର କରାଅ ।"

ବୋଧିସତ୍ତ୍ୱ କହିଲେ, "ମହାରାଜ ! ଚୋରମାନେ ଏଇଠାରେ ଅଛନ୍ତି,

କିନ୍ତୁ ସେମାନଙ୍କୁ ଖୋଜିବାରେ କି ଲାଭ ?” କିନ୍ତୁ ରାଜା ଜିଦ୍ କଲେ, ଚୋରକୁ ଧରି ଆଣିବାକୁ ହେବ ।

ତହୁଁ ବୋଧିସତ୍ତ୍ୱ କହିଲେ, “ମହାରାଜ ! କିଏ ଚୋରି କରିଛି ଜାଣିଲେ ସୁଦ୍ଧା ମୁଁ କହିବି ନାହିଁ । ତେବେ ମୁଁ ଗୋଟିଏ ଗଳ୍ପ କହୁଛି । ବୁଦ୍ଧିମାନ୍ ଲୋକ ସେହି ଗଳ୍ପରୁ ଚୋରକୁ ଚହ୍ନି ପାରିବ ।” ଏହା କହି ସେ ଗଳ୍ପଟି ଆରମ୍ଭ କଲେ ।

ଏକ ସମୟରେ ଏହି ବାରାଣସୀ ନଗରର ନିକଟରେ ପାଟଳ ବୋଲି ଜଣେ ନର୍ତ୍ତକ ଥିଲା । ତାର ଘରଟି ଥିଲା ଗୋଟିଏ ନଦୀକୂଳରେ । ଦିନେ ସେ ନିଜର ସ୍ତ୍ରୀ ସହିତ ନଗରକୁ ଆସି ନୃତ୍ୟଗୀତ ଦ୍ୱାରା ପ୍ରଚୁର ଅର୍ଥ ଅର୍ଜନ କଲା । ସହରରୁ କିଛି ଜଳଖିଆ ଓ ମଦ କିଣି ସେ ଘରକୁ ଯିବାକୁ ବସିଲା । ନଦୀକୂଳରେ ବସି ଜଳଖିଆ ଖାଇ ସେ ଯଥେଷ୍ଟ ମଦ ପିଇଲା । ମଦନିଶାରେ ଭୋଳ ହେବାରୁ ସେ ଭାବିଲା, “ବେକରେ ବୀଣାର ପକାଇ ନଈରେ ପଶିଲେ ମଜ୍ଜା ହେବ ।” ଏହା ଭାବି ସେ ବୀଣାରକୁ ବେକରେ ପକାଇଲା ଓ ସ୍ତ୍ରୀକୁ ଟାଣି ଟାଣି ନଦୀରେ ପ୍ରବେଶ କଲା । ପାଣି ବେକ ପର୍ଯ୍ୟନ୍ତ ହେବାରୁ ବୀଣାର ଭିତରେ ପାଣି ପଶିଲା । ବୀଣାରର ଓଜନ ବଢ଼ିଯିବାରୁ ସେ ପାଣିରେ ବୁଡ଼ିବାକୁ ଲାଗିଲା । ତହୁଁ ତାର ସ୍ତ୍ରୀ ସ୍ୱାମୀ ହାତକୁ ଛାଡ଼ିଦେଇ କୂଳକୁ ପଳାଇ ଆସିଲା । ପାଟଳ ପାଣି ପିଇଯିବାରୁ ତାର ପେଟ ଫୁଲିଗଲା । ସ୍ୱାମୀ ଅଳ୍ପ ସମୟ ପରେ ମରିଯିବ ଏହା ଜାଣିପାରି ସ୍ତ୍ରୀ କହିଲା, “ହେ ସ୍ୱାମୀ, ତୁମେ ତଳକୁ ତଳକୁ ବୁଡ଼ି ଯାଉଛ । ମୋତେ ଗୋଟାଏ ଗୀତ ଶିଖାଇ ଯାଅ ଯେ ମୁଁ ତାକୁ ବୋଲି ମୋର ପେଟ ପୋଷି ପାରିବି ।”

ପାଟଳ ଉତ୍ତର କଲା, “ମୁଁ ତୋତେ ଗୀତ ଶିଖାଇ ଦେବି କିପରି ? ଯେଉଁ ଜଳ ମନୁଷ୍ୟର ଜୀବନ, ଯାହା ବିନା କୌଣସି ଜୀବ ପ୍ରାଣ ଧାରଣ କରି ପାରିବେ ନାହିଁ ସେହି ଜଳ ଏବେ ମୋର କାଳ ହୋଇଅଛି ।”

ଗଳ୍ପଟି କହିସାରି ବୋଧିସତ୍ତ୍ୱ ରାଜାଙ୍କୁ ବୁଝାଇଲେ “ମହାରାଜ, ଜଳ

ଯେପରି ପ୍ରାଣୀମାନଙ୍କର ଆଶ୍ରୟ, ରାଜା ସେହିପରି ଲୋକମାନଙ୍କର ଆଶ୍ରୟ । ଏମାନେ ରକ୍ଷକ ହୋଇ ଯଦି ଭକ୍ଷକ ହୁଅନ୍ତି, ତେବେ ରକ୍ଷାର ଉପାୟ କାହିଁ ? ଗୁପ୍ତ କଥା ପ୍ରକାଶ କରିବା ଉଚିତ ନୁହେଁ । ତଥାପି ଯାହାର ବୁଦ୍ଧି ଥିବ, ସେ ଏହି ଗଳ୍ପରୁ ପ୍ରକୃତ ଚୋରକୁ ଚିହ୍ନି ପାରିବ ।"

ରାଜା ଏଥିରେ ସନ୍ତୁଷ୍ଟ ନ ହୋଇ କହିଲେ, "ମୁଁ ଗଳ୍ପରୁ କିଛି ବୁଝି ପାରୁନାହିଁ । ମୁଁ ଜାଣିବାକୁ ଚାହେଁ, କେଉଁମାନେ ଚୋରି କରିଅଛନ୍ତି ।"

ତହୁଁ ବୋଧିସତ୍ତ୍ୱ ଆଉ ଗୋଟିଏ ଗଳ୍ପ କହିଲେ—

"ମହାରାଜ; ଅନେକ ବର୍ଷ ତଳେ ଏହି ସହରଠାରୁ କିଛି ଦୂରରେ ଗୋଟିଏ ଗ୍ରାମରେ ଜଣେ କୁମ୍ଭାର ବାସ କରୁଥିଲା । ହାଣ୍ଡି ମାଠିଆ ପ୍ରଭୃତି ତିଆରି କରିବା ପାଇଁ ସେ ପ୍ରତିଦିନ ପାହାଡ଼ର ଗୋଟିଏ ସ୍ଥାନରୁ ମାଟି ଖୋଳି ଆଣୁଥିଲା । କ୍ରମେ ସେଠାରେ ଗୋଟିଏ ବଡ଼ ଗାତ ହୋଇଗଲା । ଦିନେ ସେ ଗାତ ଭିତରେ ପଶି ମାଟି ଖୋଳୁଥିବା ସମୟରେ ଭୀଷଣ ଝଡ଼-ବର୍ଷା ହେଲା । ତାହା ଫଳରେ ଗାତର ଉପରମାଟି ଭୁଷୁଡ଼ି ପଡ଼ିଲା ଓ କୁମ୍ଭାର ମୁଣ୍ଡରେ ଭୟଙ୍କର ଆଘାତ ହେଲା । ସେ କାନ୍ଦି କାନ୍ଦି କହିଲା—

ଏଇ ମାଟି ମୋର ଜୀବନ । ଏଇ ମାଟି ନେଇ ମୁଁ ହାଣ୍ଡି ମାଠିଆ ଗଢ଼ୁଥିଲି । ଲୋକେ ଏଇ ମାଟିରେ ବିହନ ବୁଣି ଫସଲ କରିବାରୁ ପ୍ରାଣ ଧରି ରହିଛନ୍ତି, ଏବେ ସେଇ ମାଟି ମୋର ସର୍ବନାଶର କାରଣ ହେଲା । ରକ୍ଷକ ଭକ୍ଷକ ହେଲେ ଆଉ ଗତି କାହିଁ ?"

ଗଳ୍ପଟି କହିସାରି ବୋଧିସତ୍ତ୍ୱ ରାଜାଙ୍କୁ କହିଲେ, "ମହାରାଜ, ମାଟି ଯେ କେବଳ କୁମ୍ଭାରର ଆଶ୍ରୟ ତାହା ନୁହେଁ; ସବୁ ଲୋକଙ୍କର ଆଶ୍ରୟ । ରାଜା ମଧ୍ୟ ମାଟି ପରି ଲୋକଙ୍କର ଆଶ୍ରୟ । ସେ ଯେବେ ଚୋରି କରିବେ ତେବେ ପ୍ରଜା ବଞ୍ଚିବେ କିପରି ? ମୋର ଗଳ୍ପରୁ ଆପଣ ଚୋରକୁ ଚିହ୍ନି ପାରିଥିବେ ।"

ରାଜା ଠିକଏ ରୁକ୍ଷ ଭାବରେ କହିଲେ, "ଗଳ୍ପରୁ ବୁଝିବାକୁ ମୁଁ ଚାହେଁ ନାହିଁ । 'ଅମୁକ ଲୋକ ଚୋର' ବୋଲି ସଫା କହିବା ଦରକାର ।"

ବୋଧିସତ୍ତ୍ୱ ରାଜାଙ୍କର ମହତ୍ତ୍ୱ ରକ୍ଷା କରିବା ପାଇଁ ଏତେ ଯତ୍ନ କଲେ; ମାତ୍ର ରାଜା ନିଜ ଜିଦ୍‌ରେ ଅଟଳ ରହିଲେ ।

ବୋଧିସତ୍ତ୍ୱ ଆହୁରି ଦୁଇତିନୋଟି ଗଳ୍ପ କହି ସେଥିରେ ରାଜା ନିଜେ ଚୋର ବୋଲି ସୂଚନା ଦେଲେ । କିନ୍ତୁ ରାଜାଙ୍କର ସେହି ଏକ କଥା, 'ଅମୁକ ଲୋକ ଚୋର' ବୋଲି ଦେଖାଇଦିଅ । ଶେଷରେ ବୋଧିସତ୍ତ୍ୱ ନିରାଶ ହୋଇ କହିଲେ, "ମହାରାଜ ! ମୁଁ ଦେଖୁଛି, ଚୋର କିଏ ବୋଲି ମୋଠାରୁ ଜାଣିବାକୁ ଆପଣ ଦୃଢ଼ପ୍ରତିଜ୍ଞ । ଯଦି ପ୍ରକୃତ ଚୋରକୁ ଦେଖାଇ-ଦେବାକୁ ଆପଣ ଚାହାନ୍ତି, ତେବେ ସହରର ଲୋକମାନଙ୍କୁ ଡକାନ୍ତୁ । ସେମାନଙ୍କ ସମକ୍ଷରେ ମୁଁ ଚୋରକୁ ଚିହ୍ନାଇଦେବି ।"

ରାଜପ୍ରାସାଦର ଫାଟକ ଆଗରେ ନଗରର ସହସ୍ର ସହସ୍ର ନରନାରୀ ରୁଣ୍ଡ ହେଲେ । ସେମାନଙ୍କୁ ସମ୍ବୋଧନ କରି ବୋଧିସତ୍ତ୍ୱ କହିଲେ— ଉପସ୍ଥିତ ଭଦ୍ରମଣ୍ଡଳୀ ! ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ବାରଣସୀରେ ଏବେ ବିଚିତ୍ର ଘଟଣା ଘଟୁଛି । ଜଳରେ ଅଗ୍ନି ନିର୍ବାପିତ ନ ହୋଇ ପ୍ରଜ୍ୱଳିତ ହେବା ଅସମ୍ଭବ । ରାଜ୍ୟରେ ରାଜା ଓ ରାଜ-ପୁରୋହିତ ଥାଉ ଥାଉ ରାଜ୍ୟରେ ଚୋରି ହେବା ଦୁଃଖର ବିଷୟ । ଚୋରମାନଙ୍କୁ ଦମନ କରିବା ସେମାନଙ୍କର କର୍ତ୍ତବ୍ୟ । ମାତ୍ର ରାଜା ଓ ପୁରୋହିତ ଆପଣମାନଙ୍କୁ ଚୋରଠାରୁ ରକ୍ଷା କରିବା ପରିବର୍ତ୍ତେ ନିଜେ ଚୋରି କରୁଛନ୍ତି । ରକ୍ଷକ ଭକ୍ଷକ ହେଲେ କିଏ ରକ୍ଷା କରିବ ? ଏବେ ନିଜେ ନିଜକୁ ରକ୍ଷା କରିବା ଛଡ଼ା ଅନ୍ୟ ଗତି ନାହିଁ ।"

ଲୋକମାନେ ଏହା ଶୁଣି ଚିନ୍ତା କଲେ—ଏ ଦୁଷ୍ଟ ରାଜା ପ୍ରଜାମାନଙ୍କୁ ରକ୍ଷା କରିବ କିପରି ? ନିଜେ ଚୋରି କରି ଅନ୍ୟ ଉପରେ ଚୋରି ଅପରାଧ ଲଦିଦେବାକୁ ଯିଏ ଚେଷ୍ଟା କରେ ସେ ରାଜପଦର ଅନୁପଯୁକ୍ତ । ନିଜେ

ରାଜଭଣ୍ଡାରର ଧନସବୁ ପୁଷ୍କରିଣୀରେ ଲୁଚାଇ ରଖିବାର ଖୋଜବାର ଅଭିନୟ କରୁଛନ୍ତି । ଭବିଷ୍ୟତରେ ଏ ଆଉ କଅଣ କରିବ କିଏ ଜାଣେ ? ଲୋକେ ଉତ୍ତ୍ୟକ୍ତ ହୋଇ ଠେଙ୍ଗାବାଡ଼ି ଧରି ରାଜା ଓ ପୁରୋହିତଙ୍କୁ ପ୍ରହାର କଲେ । ଏହା ଫଳରେ ସେହି ଦୁହିଁଙ୍କର ମୃତ୍ୟୁ ହେଲା । ତତ୍ପରେ ସେମାନେ ବୋଧିସତ୍ତ୍ୱଙ୍କୁ ଯଥାବିଧି ଅଭିଷେକ କରି ରାଜ ସିଂହାସନରେ ବସାଇଲେ ।

## ଚେତଶକୁଣ ଜାତକ

ଅତି ପ୍ରାଚୀନ କାଳରେ ବ୍ରହ୍ମଦତ୍ତ ବାରଣସୀରେ ରାଜତ୍ୱ କରୁଥିଲେ । ତାଙ୍କ ରାଜତ୍ୱରେ ପ୍ରଜାମାନେ ସୁଖରେ ଥିଲେ ଓ ରାଜ୍ୟରେ ଶାନ୍ତି ବିରାଜୁଥିଲା । କିନ୍ତୁ ତାଙ୍କର ମନରେ ଗୋଟିଏ ଦୁଃଖ ରହିଥିଲା । ସେ ନିଃସନ୍ତାନ ଥିଲେ । ଗୋଟିଏ ପୁତ୍ର ବା କନ୍ୟା ପାଇବା ପାଇଁ ସେ ଅନେକ ଯଜ୍ଞ କଲେ; କେତେ ଦେବଦେବୀଙ୍କର ଆରାଧନା କଲେ; କିନ୍ତୁ କୌଣସିମତେ ଈପ୍ସିତ ଫଳ ଲଭ କରିପାରିଲେ ନାହିଁ ।

ଦିନେ ରାଜା ସଙ୍ଗରେ ବହୁ ଅନୁଚର ନେଇ ଉଦ୍ୟାନକୁ ଭ୍ରମଣ କରିବାକୁ ଯାଇଥିଲେ । କିଛି ସମୟ ଭ୍ରମଣ କଲାପରେ ସେ ଗୋଟିଏ ପ୍ରକାଣ୍ଡ ଶାଳବୃକ୍ଷ ମୂଳରେ ବିଶ୍ରାମ ନେବାକୁ ଇଚ୍ଛା ପ୍ରକାଶ କଲେ । ଶାଳବୃକ୍ଷ ତଳେ ଗୋଟିଏ ସୁସଜ୍ଜିତ ଶଯ୍ୟାରେ ସେ ଶୋଇଲେ । ମାତ୍ର ତାଙ୍କୁ ନିଦ୍ରା ହେଲାନାହିଁ । ଊର୍ଦ୍ଧ୍ୱକୁ ଚାହିଁ ସେ ଶାଳବୃକ୍ଷର ଶାଖାରେ ଗୋଟିଏ ପକ୍ଷୀ ବସା ଦେଖିପାରିଲେ । ବୃକ୍ଷରେ ଚଢ଼ି ବସାରେ କୌଣସି ପକ୍ଷୀ ବା ଡିମ୍ବ ଅଛି କି ନା ଦେଖିବାକୁ ସେ ଜଣେ ଭୃତ୍ୟକୁ ଆଦେଶ ଦେଲେ । ଭୃତ୍ୟଟି ଗଛରେ ଚଢ଼ି ବସାକୁ ପରୀକ୍ଷା କରି କହିଲା ଯେ, ସେଥିରେ ତିନୋଟି ଡିମ୍ବ ଅଛି । ରାଜାଙ୍କ ଆଦେଶରେ ସେ ଅତି ଯତ୍ନ ସହକାରେ ଡିମ୍ବ ତିନୋଟିକୁ ତଳକୁ ନେଇ ଆସିଲା ।

ଡିମ୍ବଗୁଡ଼ିକୁ ଗୋଟିଏ ବାକ୍ସରେ ତୁଳା ଉପରେ ରଖାଗଲା । ତତ୍ପରେ ରଜା ତାଙ୍କର ପାରିଷଦମାନଙ୍କୁ ପଚାରିଲେ—"ଏଗୁଡ଼ିକ କି ପକ୍ଷୀର ଡିମ୍ବ ?" କିନ୍ତୁ ସେମାନେ ଏହା କହିପାରିଲେ ନାହିଁ । ତହୁଁ କେତେଜଣ ଶବରଙ୍କୁ ଡକାଗଲା । ସେମାନେ ଡିମ୍ବଗୁଡ଼ିକୁ ପରୀକ୍ଷା କରି କହିଲେ, "ମହାରାଜ ! ଏ ତିନୋଟି ଡିମ୍ବ ଗୋଟିଏ ପକ୍ଷୀର ନୁହନ୍ତି । ଏଥିମଧ୍ୟରୁ ଗୋଟିଏ ହେଉଛି ପେଚାର, ଗୋଟିଏ ସାରିର ଓ ଆଉ ଗୋଟିଏ ଶୁଆର ।" ଗୋଟିଏ ବସାରେ ତିନିଟି ଭିନ୍ନ ଜାତିର ପକ୍ଷୀଙ୍କର ଡିମ୍ବ ଦେଖି ରାଜା ବିସ୍ମିତ ହେଲେ । ଶବରମାନେ କହିଲେ—ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଏଠାରେ ପକ୍ଷୀମାନେ ନିର୍ଭୟରେ ବାସ କରନ୍ତି । ତେଣୁ ଯେ କୌଣସିଠାରେ ଡିମ୍ବ ଦେବାକୁ ସେମାନଙ୍କର ଭୟ ନ ଥାଏ ।

ରାଜା ଆନନ୍ଦିତ ହୋଇ ପାରିଷଦମାନଙ୍କୁ କହିଲେ, "ତୁମେମାନେ ଜାଣ ମୋର ପୁତ୍ର କନ୍ୟା ନାହାନ୍ତି । ଏହି ଡିମ୍ବ ତିନୋଟିରୁ ଯେଉଁ ଶିଶୁ ଜାତ-ହେବେ, ସେଇମାନେ ହେବେ ମୋର ସନ୍ତାନ ।" ଏହା କହି ସେ ତିନିଜଣ ଉଚ୍ଚ ରାଜକର୍ମଚାରୀଙ୍କୁ ଗୋଟିଏ ଲେଖାଏଁ ଡିମ୍ବ ଦେଇ କହିଲେ, "ତୁମେମାନେ ଏହି ଡିମ୍ବଗୁଡ଼ିକର ଉପଯୁକ୍ତ ଯତ୍ନ ନେବ । ସେଥିରୁ ଶାବକ ବାହାରିଲେ ମୋତେ ସମ୍ବାଦ ଦେବ ।"

କର୍ମଚାରୀମାନେ ଡିମ୍ବଗୁଡ଼ିକୁ ନେଇ ଖୁବ୍ ଯତ୍ନରେ ରଖିଲେ । କିଛିଦିନ ପରେ ପେଚାଡିମ୍ବଟି ଫୁଟି ଛୁଆଟିଏ ବାହାରିଲା । ଏହାର ଭାରପ୍ରାପ୍ତ କର୍ମଚାରୀ ଜଣେ ଶବରକୁ ଡକାଇ ଛୁଆଟିକୁ ପରୀକ୍ଷା କରାଇ ବୁଝିଲା ଯେ ତାହା ଗୋଟିଏ ଅଣ୍ଡିରାଛୁଆ । ସେ ତତ୍କ୍ଷଣାତ୍ ରାଜାଙ୍କ ନିକଟକୁ ଯାଇ ଜଣାଇଲା, "ମହାରାଜ ଆପଣଙ୍କର ଗୋଟିଏ ପୁତ୍ରସନ୍ତାନ ହୋଇଅଛି ।" ରାଜା ଆନନ୍ଦରେ ଉକ୍ତ କର୍ମଚାରୀକୁ ପ୍ରଚୁର ଧନ ଦେଇ ପୁତ୍ରର ଉପଯୁକ୍ତ ଲାଳନ-ପାଳନ କରିବାକୁ ଆଦେଶ ଦେଲେ ଓ କହିଲେ, "ମୋର ଏହି ପୁତ୍ରର ନାମ ହେଲା ବେସ୍ସନ୍ତର । ଦେଖ, ତାର ଲାଳନପାଳନ ଓ ଶିକ୍ଷାଦୀକ୍ଷାରେ ଯେପରି ଅବହେଳା ନ ହୁଏ ।" ରାଜକର୍ମଚାରୀ ସ୍ୱଗୃହକୁ ଫେରିଗଲେ ଓ

ପେଚକ ଶାବକଟିର ପାଳନ ବଗରେ ସମସ୍ତ ବ୍ୟବସ୍ଥା କଲେ ।

ଏହାର କଛିଦିନ ପରେ ଆଖୁ ଉମ୍ବଟି ଫୁଟିଲା । ସେଥିରୁ ଗୋଟିଏ ମାଈଛୁଆ ବାହାରିଲା । ଏହାର ଭାର ନେଇଥିବା କର୍ମଚାରୀ ତତ୍‌କ୍ଷଣାତ୍ ଯାଇ ରାଜାଙ୍କୁ ଜଣାଇଲା, "ମହାରାଜ, ଆଜି ଆପଣଙ୍କର ଏକ କନ୍ୟାରତ୍ନ ଜନ୍ମିଅଛି ।" ଏହି ସମ୍ବାଦରେ ରାଜା ଆନନ୍ଦ ପ୍ରକାଶ କରି କର୍ମଚାରୀଙ୍କୁ ଯଥେଷ୍ଟ ଧନରତ୍ନ ଦେଇ କହିଲେ, "ମୋର କନ୍ୟାର ନାମ ହେଲା, କୁଣ୍ଡଳନୀ । ତୁମେ ମୋର କନ୍ୟା ଉପରେ ସତର୍କ ଦୃଷ୍ଟିରଖି ତାର ଲାଳନପାଳନ କରୁଥିବ । ତାର ଶିକ୍ଷା ଦୀକ୍ଷାରେ ଯେପରି ଅବହେଳା ନ ହୁଏ, ସେଥିପ୍ରତି ସାବଧାନ ରହିଥିବ ।" କର୍ମଚାରୀ ବିଦାୟ ନେଇ ସ୍ୱଗୃହକୁ ଚାଲିଗଲେ ।

ଆଉରି କଛିଦିନ ପରେ ଶୁଆ ଉମ୍ବରୁ ଛୁଆ ବାହାରିଲା । କର୍ମଚାରୀ ବେକକୁ ଉଠାଇ ବୁଝିଲେ ଯେ ତାହା ଏକ ଅଣ୍ଡିରି ଛୁଆ । ସେ ଅବିଳମ୍ବେ ରାଜାଙ୍କ ପାଖରେ ଉପସ୍ଥିତ ହୋଇ ଜଣାଇଲେ, "ମହାରାଜ, ଆପଣ ଗୋଟିଏ ପୁତ୍ର ଲାଭ କରିଅଛନ୍ତି ।" ରାଜା ଏହି ସମ୍ବାଦରେ ଆନନ୍ଦ ପ୍ରକାଶ କରି କର୍ମଚାରୀଙ୍କୁ ଧନରତ୍ନ ଦେଇ କହିଲେ, "ମୋର ପୁତ୍ରଜନ୍ମ ଉପଲକ୍ଷରେ ଆନନ୍ଦ ଉତ୍ସବ କରାଅ । ମୋର ପୁତ୍ରର ଲାଳନପାଳନ ଓ ଶିକ୍ଷାଦୀକ୍ଷାରେ ଯେପରି ତ୍ରୁଟି ନ ହୁଏ, ସେଥିପ୍ରତି ଦୃଷ୍ଟି ରଖିଥିବ ।" ରାଜକର୍ମଚାରୀ ରାଜାଙ୍କ ପାଖରୁ ବିଦାୟ ନେଇଗଲେ ।

ଏହି ରାଜକର୍ମଚାରୀମାନେ ରାଜାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ସେମାନଙ୍କୁ ରାଜପୁତ୍ର ଓ ରାଜକନ୍ୟା ଭଳି ପାଳନ କରିବାକୁ ଲାଗିଲେ । ସେମାନଙ୍କୁ ରାଜୋଚିତ ସମ୍ମାନ ପ୍ରଦର୍ଶନ କରାଯାଉଥିଲା ।

ରାଜା ଏହି ପକ୍ଷୀଶାବକ ସମ୍ବନ୍ଧରେ ପାରିଷଦମାନଙ୍କ ସହିତ କଥାବାର୍ତ୍ତା ବେଳେ 'ମୋ ବଡ଼ପୁଅ', 'ମୋ ସାନପୁଅ', 'ମୋ ଝିଅ' ଏହିପରି କହୁଥିଲେ । କେହି କେହି ରାଜାଙ୍କ ପଛରେ ଏଥିପାଇଁ ତାଙ୍କୁ ଉପହାସ କରି ଆପଣା-ଆପଣା ଭିତରେ କଥାବାର୍ତ୍ତା ହେଉଥିଲେ, "ଆମ ରାଜାଙ୍କୁ ଦେଖ, ପୁଅଟିଏ

କ ଝିଅଟିଏ ହେଲନାହିଁ । ଏବେ ଚଢ଼େଇଙ୍କୁ ପୁଅଝିଅ କହି ମନର ଦୁଃଖ ମେଣ୍ଟାଇବାକୁ ବସିଛନ୍ତି । ଯେତେହେଲେ ଗୁଡ଼ପଣା କଅଣ ଅମୃତ ହୋଇ-ଯିବ ? ମଣିଷ ମଣିଷ; ଚଢ଼େଇ ଚଢ଼େଇ ।"

ପାତ୍ରମନ୍ତ୍ରୀଙ୍କର ଏହି ଉପହାସ କୌଣସି ମତେ ରାଜା ଜାଣିପାରିଲେ । ତହୁଁ ନିଜ ପୁଅ ଝିଅଙ୍କର ବିଦ୍ୟାବୁଦ୍ଧି ଦେଖାଇବା ପାଇଁ ସେ ମନେ ମନେ ସ୍ଥିର କଲେ । ଦିନେ ସେ ଜଣେ ମନ୍ତ୍ରୀଙ୍କୁ କହିଲେ, "ତୁମେ ଆମ ବଡ଼ପୁଅଙ୍କୁ କହିବ ଯେ ଆମେ ତାଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଯିବୁ । କେତେବେଳେ ସୁବିଧା ହେବ ତାହା ତାଙ୍କଠାରୁ ବୁଝି ଆସିବ ।"

ମନ୍ତ୍ରୀ ରାଜକର୍ମଚାରୀ ଗୃହକୁ ଯାଇ ବେସ୍ସନ୍ତରଙ୍କୁ ଯଥାବିଧି ପ୍ରଣାମ କରି କହିଲେ, "ମହାରାଜ ଗୋଟିଏ ପ୍ରଶ୍ନ ପଚାରିବା ପାଇଁ ଆପଣଙ୍କ ପାଖକୁ ଆସିବାକୁ ଇଚ୍ଛା କରନ୍ତି । କେଉଁଦିନ ସେ ଆସିବା ସୁବିଧାଜନକ ହେବ, ତାହା ଜଣାଇବା ପାଇଁ କହିଛନ୍ତି ।" ବେସ୍ସନ୍ତର ଚଷକ ରାଜକର୍ମଚାରୀଙ୍କୁ କହିଲେ, "ମୋର ପିତା ଏଠାକୁ ଆସି ମୋ ସହିତ କିଛି ପରାମର୍ଶ କରିବାକୁ ଚାହାନ୍ତି । ସେ ଆସିଲେ ତାଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ବିହିତ ବ୍ୟବସ୍ଥା ରଖିବାକୁ ହେବ । କେବେ ଆସିବା ପାଇଁ ତାଙ୍କୁ ସମ୍ବାଦ ଦେବ ?" ରାଜକର୍ମଚାରୀ କହିଲେ, "ମହାରାଜ ଆସିଲେ ତାଙ୍କର ଉପଯୁକ୍ତ ଅଭ୍ୟର୍ଥନା କରାଯିବ, ଏଥିରେ ସନ୍ଦେହ ନାହିଁ । ମୋ ମତରେ ସପ୍ତାହକ ପରେ ଗୁରୁବାର ଦିନ ସେ ଆସିଲେ ସୁବିଧା ହେବ ।" ବେସ୍ସନ୍ତର ମନ୍ତ୍ରୀଙ୍କୁ କହିଲେ, "ମୋର ପିତାଙ୍କୁ ଜଣାଇଦେବ ଯେ ସେ ଆସନ୍ତା ଗୁରୁବାରଦିନ ମୋ ସହିତ ଆଲୋଚନା କରିବା ସୁବିଧାଜନକ ହେବ ।

ମନ୍ତ୍ରୀ ଫେରିଯାଇ ରାଜାଙ୍କୁ ଏହି ସମ୍ବାଦ ଦେଲେ । ନିର୍ଦ୍ଦିଷ୍ଟଦିନ ନଗରରେ ଜଣାଇଦିଆଗଲା ଯେ ରାଜା କୌଣସି ପରାମର୍ଶ ପାଇଁ ତାଙ୍କ ବଡ଼ପୁଅଙ୍କ ଘରକୁ ଯାଉଅଛନ୍ତି ।

ନିର୍ଦ୍ଦିଷ୍ଟ ଦିନ ରାଜା କର୍ମଚାରୀଙ୍କ ଗୃହରେ ଉପସ୍ଥିତ ହେବାରୁ ବେସ୍ସନ୍ତର ରାଜାଙ୍କୁ ପ୍ରଣାମ କରି ଉପଯୁକ୍ତ ସମ୍ମାନ ଦେଖାଇଲେ । ରାଜାଙ୍କର ଅନୁଚର-

ମାନଙ୍କୁ ମଧ୍ୟ ବହୁତ ସମ୍ବର୍ଦ୍ଧନା କରାଗଲା । ରାଜା ଭୋଜନ କରି କିଛି ସମୟ ପର୍ଯ୍ୟନ୍ତ ପୁତ୍ର ସହିତ ଆଳାପ କରି ପ୍ରାସାଦକୁ ଫେରି ଆସିଲେ ।

ଏହାର କିଛିଦିନ ପରେ ସେ ପ୍ରାସାଦ ପ୍ରାଙ୍ଗଣରେ ଏକ ବିଶାଳ ମଣ୍ଡପ ପ୍ରସ୍ତୁତ କରାଇଲେ । ଏହାକୁ ଅତି ଆଡ଼ମ୍ବରରେ ସୁସଜ୍ଜିତ କରାଗଲା ଓ ସେଠାରେ ରାଜା, ରାଜପୁତ୍ର ବେସ୍‌ସନ୍ତର ଓ ରାଜପୁରୁଷମାନଙ୍କ ନିମନ୍ତେ ଉପଯୁକ୍ତ ଆସନ ରଖାଗଲା । ନଗର ମଧ୍ୟରେ ଘୋଷଣା ଦିଆଗଲା ଯେ ରାଜପୁତ୍ର ବେସ୍‌ସନ୍ତର ମଣ୍ଡପରେ ବିଜେ କରିବେ । ରାଜପୁତ୍ରଙ୍କୁ **ସମ୍ବାଦ** ଦିଆଗଲା । ରାଜପୁରୁଷମାନଙ୍କ ସହିତ ରାଜା ମଣ୍ଡପରେ ବସି ପୁତ୍ରଙ୍କୁ ଅପେକ୍ଷା କରି ରହିଲେ ।

କିଛି ସମୟ ପରେ ରାଜକର୍ମଚାରୀ ବେସ୍‌ସନ୍ତରଙ୍କୁ ଗୋଟିଏ ସ୍ୱର୍ଣ୍ଣ ଆସନରେ ବସାଇ ମଣ୍ଡପ ନିକଟରେ ଉପସ୍ଥିତ ହେଲେ । ପ୍ରଥମେ ବେସ୍‌ସନ୍ତର ରାଜାଙ୍କୁ ସମ୍ମାନ ସହକାରେ ପ୍ରଣାମ କଲେ ଓ କିଛିକ୍ଷଣ ପର୍ଯ୍ୟନ୍ତ ରାଜା ତାଙ୍କୁ କୋଳରେ ବସାଇ ଆଦର କଲେ । ରାଜପୁରୁଷ ଓ ନଗରବାସୀ ବିସ୍ମିତ ହୋଇ ଏହି ଦୃଶ୍ୟ ଦେଖିବାକୁ ଲାଗିଲେ । ତତ୍ପରେ ରାଜା ବେସ୍‌ସନ୍ତରଙ୍କୁ ତାଙ୍କ ଆସନରେ ବସାଇ ପଚାରିଲେ, "ପୁତ୍ର ! ମୋର ତୁମକୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଅଛି । ରାଜା ରାଜ୍ୟଶାସନ ନିମନ୍ତେ କି ପନ୍ଥା ଅବଲମ୍ବନ କରିବା ଉଚିତ ?"

ବେସ୍‌ସନ୍ତର ଉତ୍ତର କଲେ, "ରାଜା ନ୍ୟାୟ ଓ ଧର୍ମରେ ରାଜ୍ୟଶାସନ କରିବା ଉଚିତ । ପ୍ରଥମତଃ ମିଥ୍ୟା, କ୍ରୋଧ ଓ ଘୃଣାଠାରୁ ରାଜା ଦୂରରେ ରହିବେ । ଯଦି ରାଜା କାମର ବଶବର୍ତ୍ତୀ ହୋଇ ପାପକାର୍ଯ୍ୟରେ ରତ ହୁଅନ୍ତି, ତେବେ ତାଙ୍କୁ ଅନୁତାପ କରିବାକୁ ପଡ଼ିବ । ରାଜ୍ୟଶାସନରେ ଅବହେଳା କଲେ ରାଜା ଦୁର୍ନାମରେ ଭାଗୀ ହୁଅନ୍ତି ଓ ଧନହୀନ ହୋଇ ଲଜ୍ଜା ଓ ଅପମାନରେ ଜୀବନ କଟାନ୍ତି । ଯେ ଉତ୍ସାହୀ ଓ ସାହସୀ, ପରକୁ ଈର୍ଷ କରେ ନାହିଁ, ତାହାର ପାଖରେ ଲକ୍ଷ୍ମୀ ବାସ କରନ୍ତି । ଯିଏ ଦୁଷ୍କର୍ମ କରେ, ସେ ମନ୍ଦଭାଗ୍ୟ । ହେ ରାଜନ୍ ! ପ୍ରଜାମାନଙ୍କ ପ୍ରତି ବନ୍ଧୁବତ୍ ବ୍ୟବହାର

କଲେ ସେମାନେ ରାଜାଙ୍କ ପାଇଁ ପ୍ରାଣଦେବାକୁ ପ୍ରସ୍ତୁତ ହେବେ । ସାହସୀ ଓ ପ୍ରଜାପରାୟଣ ରାଜା ଅକ୍ଳେଶରେ ଶତ୍ରୁମାନଙ୍କୁ ଦମନ କରିବାକୁ ସମର୍ଥ ହୋଇଥାଏ । ଉତ୍ସାହ ଓ ସାହସ ରାଜାଙ୍କର ପ୍ରଧାନ ଗୁଣ । ଶକ୍ର ଏହି ଗୁଣରେ ଅଧିକାରୀ ଥିବାରୁ ଦେବତା ଓ ଗନ୍ଧର୍ବମାନଙ୍କୁ ଆନନ୍ଦ ଦେଇଥାନ୍ତି । ନ୍ୟାୟ ନିମନ୍ତେ ସମସ୍ତ ଶକ୍ତି ଓ ସାହସ ପ୍ରୟୋଗ କରିବା ରାଜାର କର୍ତ୍ତବ୍ୟ । ସର୍ବଦା ସତ୍‌କାର୍ଯ୍ୟରେ ପ୍ରବୃତ୍ତ ରହିବା ଉଚିତ । ଆଳସ୍ୟ ରାଜାଙ୍କର ପରମ ଶତ୍ରୁ । ସଂକ୍ଷେପରେ ଏହାହିଁ ହେଉଛି ରାଜାଙ୍କର କର୍ତ୍ତବ୍ୟ ।”

ବୋଧିସତ୍ତ୍ୱଙ୍କର ଏହି ଉପଦେଶ ଶୁଣି ଲୋକେ ବିସ୍ମୟରେ ସ୍ତବ୍ଧ ହୋଇଗଲେ । ସେମାନେ ମନେ କଲେ, ସତେ ଅବା ସ୍ୱୟଂ ବୁଦ୍ଧଦେବ ଉପଦେଶ ଦେଉଅଛନ୍ତି । ଚାରିଆଡ଼ୁ ତାଙ୍କର ପ୍ରଶଂସା ଧ୍ୱନି ଶୁଭିଲା ।

ରାଜା ଆନନ୍ଦରେ ଅଭିଭୂତ ହୋଇ ପାତ୍ରମନ୍ତ୍ରୀମାନଙ୍କୁ ପଚାରିଲେ, “ମୋ ପୁଅର ଜ୍ଞାନ ବିଷୟରେ ଆପଣମାନେ କିଛି ଜାଣି ପାରିଥିବେ । ତାକୁ କେଉଁ କାର୍ଯ୍ୟରେ ନିଯୁକ୍ତ କରିବା ଉଚିତ ହେବ, କୁହ ।” ସମସ୍ତେ ଏକସ୍ୱରରେ କହି ଉଠିଲେ, “ରାଜପୁତ୍ରଙ୍କୁ ରାଜ୍ୟର ପ୍ରଧାନ ସେନାପତି ପଦରେ ନିଯୁକ୍ତ କରାଯାଉ ।” ରାଜା ପାତ୍ରମନ୍ତ୍ରୀ ଓ ଜନସାଧାରଣଙ୍କ ଇଚ୍ଛା ଅନୁସାରେ ବୋଧିସତ୍ତ୍ୱଙ୍କୁ ପ୍ରଧାନ ସେନାପତି ପଦ ପ୍ରଦାନ କଲେ ।

ବୋଧିସତ୍ତ୍ୱ ଏହି ପଦରେ ପ୍ରତିଷ୍ଠିତ ରହି ନିଜର କର୍ତ୍ତବ୍ୟ ସାଧନରେ ବ୍ରତୀ ହେଲେ ।

କିଛିଦିନ ପରେ ରାଜା ପୂର୍ବପରି କୁଣ୍ଡଳିନୀ ପାଖକୁ ସମ୍ବାଦ ଦେଲେ ଓ ଏକ ସପ୍ତାହ ପରେ କନ୍ୟା ସହିତ ସାକ୍ଷାତ କରି କଥାବାର୍ତ୍ତା ହେଲେ । ରାଜପ୍ରାସାଦକୁ ଫେରିଆସିବା ପରେ ସେ ଗୋଟିଏ ଦିନ ସ୍ଥିର କରି ମଣ୍ଡପରେ ପାତ୍ରମନ୍ତ୍ରୀ ଓ ନଗରବାସୀଙ୍କୁ ଏକତ୍ର କରାଇଲେ । ତତ୍ପରେ ନିଜେ ସିଂହାସନରେ ବସି ଏକ ମନ୍ତ୍ରୀଙ୍କ ଦ୍ୱାରା କୁଣ୍ଡଳିନୀଙ୍କୁ ଡକାଇ ଆଣିଲେ । ଜଣେ କର୍ମଚାରୀ ତାଙ୍କୁ ସୁନାର ଆସନରେ ବସାଇ ମଣ୍ଡପକୁ ଆଣିଲା । ଉପଯୁକ୍ତ ଆସନ ଗ୍ରହଣ କଲା ପରେ ରାଜା କୁଣ୍ଡଳିନୀଙ୍କୁ ପଚାରିଲେ, “ବତ୍ସେ, ମୋର ଗୋଟିଏ ସନ୍ଦେହ

ଦୂର କରିପାରିବ କି ? ରାଜଧର୍ମ କଅଣ, ମୋତେ କୁହ ।"

କୁଣ୍ଡଳମୀ ମଧୁର ସ୍ୱରରେ କହିଲେ, "ପିତଃ, ମୁଁ ଜାଣିପାରୁଛି, ଆପଣ ମୋତେ ପରୀକ୍ଷା କରିବାକୁ ଚାହାଁନ୍ତି । ଆପଣ ମନେ କରୁଥିବେ, ସ୍ତ୍ରୀଜାତି ରାଜଧର୍ମ ବିଷୟରେ କଣ ଜାଣେ । କିନ୍ତୁ ମୁଁ ରାଜାଙ୍କର କର୍ତ୍ତବ୍ୟ ବିଷୟରେ କିଛି ଶିକ୍ଷା କରିଅଛି । ସଂକ୍ଷେପରେ ତାହା ଜଣାଉଅଛି ।

ଯାହା ନିଜର ଅଛି; ତାହାକୁ ରକ୍ଷା କରିବା ଓ ଯାହା ନିଜର ନାହିଁ, ତାହାକୁ ଲାଭ କରିବା ହେଉଛି ରାଜାର ପ୍ରଧାନ ଲକ୍ଷ୍ୟ ।

ଯେଉଁମାନେ ବୁଦ୍ଧିମାନ୍ ଓ ରାଜାଙ୍କ ସ୍ୱାର୍ଥ ପ୍ରତି ସର୍ବଦା ସଚେତନ, କେବଳ ସେହିମାନଙ୍କୁ ରାଜକାର୍ଯ୍ୟରେ ନିଯୁକ୍ତ କରିବା ଉଚିତ । ରାଜା ଦ୍ୟୂତକ୍ରୀଡ଼ା ଓ ମଦ୍ୟକୁ ଦୂରରୁ ପରିହାର କରିବେ । ସାରଥି ରଥକୁ ଉପଯୁକ୍ତ ମାର୍ଗରେ ଚଳାଇବା ପରି ରାଜା ରାଜ୍ୟକୁ ସତ୍‌ପଥରେ ଚଳାଇବେ । କାହିଁରେ ନିଜର ଲାଭ ଓ କାହିଁରେ କ୍ଷତି, ସେଥିପ୍ରତି ଦୃଷ୍ଟି ରଖି ରାଜା ରାଜକର୍ମରେ ଅଗ୍ରସର ହେବେ । ରାଜା ପ୍ରଜାମାନଙ୍କୁ ଧର୍ମ ଓ ନ୍ୟାୟପଥରେ ଚଳିବାକୁ ଉପଦେଶ ଦେବା ସଙ୍ଗେ ନିଜେ ଧର୍ମ ଓ ନ୍ୟାୟରେ ଚଳିବେ । ଉତ୍ତମ ରୂପେ ବିଚାର ନ କରି ହଠାତ୍ କୌଣସି ସିଦ୍ଧାନ୍ତ ଗ୍ରହଣ କରିବା ବିପଜ୍ଜନକ । କ୍ରୋଧ ହେଉଛି ପରମ ଶତ୍ରୁ । କ୍ରୋଧର ବଶବର୍ତ୍ତୀ ହେଲେ ରାଜାଙ୍କର ଓ ତାଙ୍କ ରାଜ୍ୟର ସର୍ବନାଶ ହୁଏ । କାହାରିକୁ ଅଯଥା କଷ୍ଟ ଦେବା ରାଜାଙ୍କ ପକ୍ଷରେ ଅନୁଚିତ । ରାଜା ଅସାବଧାନ ଓ ଇନ୍ଦ୍ରିୟବଶ ହେଲେ ରାଜ୍ୟ ହତଶ୍ରୀ ହୋଇଯାଏ । ହେ ରାଜନ୍ ! ଏକକଥାରେ ଧର୍ମର ପନ୍ଥା ସୁଖକର ଓ ପାପର ପନ୍ଥା ଦୁଃଖଦାୟକ ।"

ରାଜା ଏହି ଉପଦେଶପୂର୍ଣ୍ଣ ବାଣୀ ଶୁଣି ଆନନ୍ଦିତ ମନରେ ପାତ୍ରମନ୍ତ୍ରୀଙ୍କୁ ପଚାରିଲେ, "ଆମ କୁଣ୍ଡଳମୀ ଯେଉଁ ମହାନ୍ ଉପଦେଶ ଦେଲେ ସେଥିପାଇଁ ତାଙ୍କୁ କି ପୁରସ୍କାର ଦେବା ଉଚିତ ହେବ ?"

ସେମାନେ ଏକ ସ୍ୱରରେ କହିଲେ, "ମହାରାଜ, ତାହାଙ୍କ ଉପରେ ରାଜକୋଷର ଭାର ନ୍ୟସ୍ତ କରନ୍ତୁ ।"

ରାଜା କୁଣ୍ଡଳୀଙ୍କୁ ରାଜକୋଷରେ ଅଧ୍ୟକ୍ଷତା ପ୍ରଦାନ କଲେ ।

ଆଉ ଅଳ୍ପ କେତୋଟି ଦିନ ପରେ ରାଜା ଜମ୍ବୁକଙ୍କୁ ଆଣାଇ ସର୍ବସମକ୍ଷରେ ପ୍ରଶ୍ନ କଲେ, "ବତ୍ସ, ମୁଁ ତୁମର ଭାଇ ଓ ଭଉଣୀଙ୍କ ଠାରୁ ରାଜାଙ୍କର କର୍ତ୍ତବ୍ୟ ବିଷୟ ଶୁଣିଅଛି । ଏବେ ରାଜାଙ୍କର ବଳ ଓ କର୍ତ୍ତବ୍ୟ ସମ୍ବନ୍ଧରେ ତୁମର ମତ ପ୍ରକାଶ କର ।"

ଜମ୍ବୁକ କହିବାକୁ ଲାଗିଲେ, "ମହାରାଜ, ଆମ୍ଭେମାନେ ପାଞ୍ଚପ୍ରକାରର ବଳ ଦେଖିବାକୁ ପାଉଁ । ସେଥିମଧ୍ୟରେ ଶାରୀରିକବଳ ସବୁଠାରୁ ହୀନ; କାରଣ ଏହା ପାଶବିକ ବଳ । ଧନର ବଳ ଶାରୀରିକ ବଳଠାରୁ ସାମାନ୍ୟ ଊର୍ଦ୍ଧ୍ୱରେ ।" ଅମାତ୍ୟର ପରାମର୍ଶ ବଳ ମଧ୍ୟରେ ମଧ୍ୟମ ସ୍ଥାନ ଅଧିକାର କରେ । ଏହାଦ୍ୱାରା ମନୁଷ୍ୟ କେତେକ ସତ୍‌କାର୍ଯ୍ୟ କରିପାରେ । ଜାତିର ବଳ ହେଉଛି ଚତୁର୍ଥ ସ୍ଥାନୀୟ । କିନ୍ତୁ ସବୁଠାରୁ ଶ୍ରେଷ୍ଠ ହେଉଛି ବୁଦ୍ଧି ବଳ । ଏହାରି ବଳରେ ମନୁଷ୍ୟ ସମସ୍ତ କାର୍ଯ୍ୟରେ ସାଫଲ୍ୟ ଅର୍ଜନ କରିପାରେ । ଯଦି ରାଜା ବୁଦ୍ଧି ହୀନ ହୁଅନ୍ତି, ତେବେ ତାଙ୍କ ରାଜ୍ୟ ଯେତେ ଐଶ୍ୱର୍ଯ୍ୟଶାଳୀ ହୋଇଥିଲେ ହେଁ ଅଚିରେ ଧ୍ୱଂସ ପାଇଯାଏ । ଯେତେ ବଡ଼ ରାଜା ହୋଇଥାନ୍ତୁ, ବୁଦ୍ଧି ହୀନ ହୋଇଥିଲେ ତାଙ୍କର ବିପଦ ଅନିବାର୍ଯ୍ୟ । ବୁଦ୍ଧି-ବଳରେ ରାଜା ନିଜର ଯଶଃ ବୃଦ୍ଧି କରନ୍ତି । ଏହାଦ୍ୱାରା ଲୋକେ ଘୋର ଦୁଃଖକୁ ମଧ୍ୟ ସୁଖରେ ପରିଣତ କରିଥାନ୍ତି । ତେଣୁ ରାଜ୍ୟଶାସନରେ ବୁଦ୍ଧିମାନ ଲୋକଙ୍କର ପରାମର୍ଶ ନେବା ବିଧେୟ । ନିର୍ବୋଧ ଲୋକେ ଅନ୍ୟାୟ କର୍ମ କରି ନିଜର ଓ ଦେଶର ସର୍ବନାଶର କାରଣ ହୋଇଥାନ୍ତି ।

ଏହିପରି ଜମ୍ବୁକ ପାଞ୍ଚ ପ୍ରକାର ବଳମଧ୍ୟରେ ଜ୍ଞାନ ହିଁ ଶ୍ରେଷ୍ଠ ବଳ ବୋଲି ବୁଝାଇଦେଲେ ।

ଉପସ୍ଥିତ ଜନତା ଜମ୍ବୁକଙ୍କର ପ୍ରଶଂସାଗାନ କରିବାକୁ ଲାଗିଲେ । ରାଜା ସେମାନଙ୍କୁ ପଚାରିଲେ, "ମୋର ପୁତ୍ର ଜମ୍ବୁକଙ୍କର ଉପଦେଶ ଶୁଣିଲ । ଏବେ ତାଙ୍କ ଉପରେ କେଉଁ ରାଜକର୍ମ ନ୍ୟସ୍ତ କରିବା ?" ପାତ୍ରମନ୍ତ୍ରୀମାନେ ଉତ୍ତର କଲେ, "ତାଙ୍କୁ ସୈନ୍ୟ ବିଭାଗରେ ଉଚ୍ଚ ପଦ ଦିଆଯାଉ ।" ରାଜା ତାଙ୍କୁ

ସେହି ପଦରେ ନିଯୁକ୍ତ କଲେ ଓ ସେ ମଧ୍ୟ ଯଥାଯଥ ଭାବରେ ତାଙ୍କର କର୍ତ୍ତବ୍ୟ ପାଳନ କରି ସମସ୍ତଙ୍କର ପ୍ରଶଂସାଭାଜନ ହେଲେ । ସେ ଯେ କେବଳ ସୈନ୍ୟବିଭାଗର କାର୍ଯ୍ୟ ପରିଚାଳନା କରୁଥିଲେ, ତାହା ନୁହେଁ; ରାଜ୍ୟଶାସନ ଓ ଧର୍ମକାର୍ଯ୍ୟ ବିଷୟରେ ମଧ୍ୟ ସେ ରାଜାଙ୍କୁ ପରାମର୍ଶ ଦେଉଥିଲେ ।

ମୃତ୍ୟୁପୂର୍ବରୁ ରାଜା ପାତ୍ରମନ୍ତ୍ରୀଙ୍କୁ କହିଲେ, "ମୋ ଅନ୍ତେ ଏହି ଜମ୍ବୁକ ମୋର ଉତ୍ତରାଧିକାରୀ ହେବେ । ତାଙ୍କ ଶାସନରେ ପ୍ରଜାବର୍ଗ ସୁଖରେ ରହିବେ ଏଥିରେ ସନ୍ଦେହ ନାହିଁ ।"

ରାଜାଙ୍କ ସ୍ୱର୍ଗାରୋହଣ ପରେ ପାତ୍ରମନ୍ତ୍ରୀମାନେ ଜମ୍ବୁକଙ୍କୁ ସିଂହାସନରେ ବସି ରାଜ୍ୟଶାସନ କରିବାକୁ ଅନୁରୋଧ କଲେ । କିନ୍ତୁ ସେ କହିଲେ, "ମୁଁ ରାଜପଦରେ ଅଭିଳାଷୀ ନୁହେଁ । ତୁମ୍ଭେମାନେ ସତ୍ୟ, ଧର୍ମ ଓ ନ୍ୟାୟକୁ ଅନୁସରଣ କରି ରାଜ୍ୟଶାସନ କର ।" ଏହିପରି ଉପଦେଶ ଦେଇ ସେ ବନକୁ ପ୍ରସ୍ଥାନ କଲେ ।

ଜମ୍ବୁକଙ୍କ ଉପଦେଶାବଳୀ ରାଜ୍ୟରେ ଅନୁସୃତ ହେବାରୁ ସହସ୍ର ସହସ୍ର ବର୍ଷ ପର୍ଯ୍ୟନ୍ତ ବାରାଣସୀ ରାଜ୍ୟରେ ସୁଶାସନ ଚାଲିଥିଲା ।

## ମହାପଦ୍ମ ଜାତକ

ଅତି ପ୍ରାଚୀନ ଯୁଗର କଥା । ସେତେବେଳେ ବ୍ରହ୍ମଦତ୍ତ ବାରାଣସୀରେ ରାଜପଣ କରୁଥିଲେ । ବୋଧିସତ୍ତ୍ୱ ତାଙ୍କ ପାଟରାଣୀଙ୍କ ଗର୍ଭରୁ ରାଜାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ଜନ୍ମ ସମୟରୁ ତାଙ୍କର ମୁଖ ଶୋଭାରେ ପଦ୍ମଫୁଲକୁ ମଧ୍ୟ ନିନ୍ଦା କରୁଥିଲା । ପିତାମାତା ପୁତ୍ରର ସୌନ୍ଦର୍ଯ୍ୟ ଦେଖି ତାଙ୍କର ନାମକରଣ କରିଥିଲେ ପଦ୍ମକୁମାର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସେ ସକଳ ଶାସ୍ତ୍ର ଅଧ୍ୟୟନ କରି ଜ୍ଞାନ ଅର୍ଜନ କଲେ । ଫଳରେ ସେ ରୂପ ଓ ଗୁଣରେ ଅଦ୍ୱିତୀୟ ଥିଲେ ।

ବୋଧିସତ୍ତ୍ୱଙ୍କର ଯୌବନକାଳରେ ତାଙ୍କ ମାତାଙ୍କର ମୃତ୍ୟୁ ହେଲା ଓ ରାଜା ବ୍ରହ୍ମଦତ୍ତ ଅନ୍ୟ ଜଣେ ସୁନ୍ଦରୀ ରମଣୀଙ୍କୁ ତାଙ୍କର ପାଟରାଣୀରୂପେ ଗ୍ରହଣ କଲେ । ବୋଧିସତ୍ତ୍ୱ ରାଜପ୍ରତିନିଧି ପଦରେ ନିଯୁକ୍ତ ହେଲେ ।

ଏକଦା ରାଜା ସମ୍ବାଦ ପାଇଲେ ଯେ ସୀମାନ୍ତ ପ୍ରଦେଶରେ ବିଦ୍ରୋହ ଉପସ୍ଥିତ । ତେଣୁ ସେ ନିଜେ ବିଦ୍ରୋହୀମାନଙ୍କୁ ଦମନ କରିବାକୁ ବାହାରିଲେ । ରାଣୀ ମଧ୍ୟ ତାଙ୍କ ସହିତ ଯିବାକୁ ବାହାରିବାରୁ ରାଜା କହିଲେ, "ତୁମେ ରାଜପ୍ରାସାଦରେ ରହିଥାଅ । ବିଦ୍ରୋହ ଲାଗିଥିବା ଅଞ୍ଚଳକୁ ଯିବା ତୁମ ପକ୍ଷରେ ନିରାପଦ ନୁହେଁ । ଯୁବରାଜ ମଧ୍ୟ ରାଜଧାନୀରେ ରହୁଛନ୍ତି । ସେ ଯେପରି ଜ୍ଞାନୀ, ସେହିପରି ବୀର । ତେଣୁ ଏଠାରେ ତୁମର ଆଶଙ୍କାର କୌଣସି କାରଣ ନାହିଁ । ସେ ଯେ ତୁମର ସମସ୍ତ ସୁବିଧା କରିଦେବେ ଏ ବିଷୟରେ ତୁମେ ନିଶ୍ଚିନ୍ତ ରହିପାର ।"

ରାଣୀଙ୍କୁ ଏହିପରି ବୁଝାଇ ଓ ବୋଧିସତ୍ତ୍ୱଙ୍କୁ ତାଙ୍କର କର୍ତ୍ତବ୍ୟ ବିଷୟରେ ଉପଦେଶ ଦେଇ ରାଜା ସୈନ୍ୟସାମନ୍ତ ଘେନି ସୀମାନ୍ତକୁ ଚାଲିଗଲେ । ସେଠାରେ ଉପସ୍ଥିତ ହୋଇ ସେ ବିଦ୍ରୋହୀମାନଙ୍କୁ ବିତାଡ଼ିତ କଲେ ଓ ରାଜଧାନୀକୁ ଫେରିଆସିଲେ । ସେ ପ୍ରଥମେ ସୈନ୍ୟସାମନ୍ତ ସହ ରାଜଧାନୀକୁ ଆସି ନଗର ବାହାରେ ଶିବିର ସ୍ଥାପନ କଲେ । ପିତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ବୋଧିସତ୍ତ୍ୱ ସମସ୍ତ ନଗରକୁ ସୁସଜ୍ଜିତ କରାଇଲେ ଓ ନିଜେ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ପ୍ରାସାଦରୁ ବାହାରିଲେ । ଏହି ସମୟରେ ରାଣୀ ବୋଧିସତ୍ତ୍ୱଙ୍କର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁରହିଲେ । ବୋଧିସତ୍ତ୍ୱ ପଚାରିଲେ, "ମାଆ, ତୁମପାଇଁ କିଛି କରିବାକୁ ଥିଲେ ମୋତେ ଆଦେଶ ଦିଅ ।" କିନ୍ତୁ ରାଣୀ କାମପୀଡ଼ିତା ହୋଇ ତାଙ୍କ ହାତ ଧରି କହିଲେ, "ମୋତେ ମାଆ ବୋଲି କୁହ ନାହିଁ । ଆସ, ମୋ ସଙ୍ଗେ ଏକ ଆସନରେ କିଛି ସମୟ କଟାଇ ମୋ ଅନ୍ତରର ଦୁଃଖ ଦୂର କର । ରାଜା ଉଆସକୁ ଆସିବା ପୂର୍ବରୁ ମୁଁ ତୁମର ରୂପମାଧୁରୀ ଭୋଗ କରି ପାରିଲେ ଧନ୍ୟ ହେବି ।" ଏହା ଶୁଣି ବୋଧିସତ୍ତ୍ୱ ସ୍ତମ୍ଭୀଭୂତ ହୋଇଗଲେ ।

କିଛି ସମୟ ପରେ ସେ କହିଲେ, "ମାଆ ହୋଇ ତୁମେ ଏପରି କଥା କହୁଛ କିପରି ? ଏ ପ୍ରକାର ଚିନ୍ତାକୁ ମନରେ ସ୍ଥାନ ଦେବା ମଧ୍ୟ ପାପ ।"

ରାଣୀ ଯେତେ କହିଲେ ସୁଦ୍ଧା ବୋଧିସତ୍ତ୍ୱ ଏହି କୁତ୍ସିତ ପ୍ରସ୍ତାବରେ ସ୍ୱୀକୃତ ନ ହୋଇ ଶିବିରକୁ ଯିବାକୁ ବସିଲେ । ଏହିପରି ନିଜ ମନ୍ଦ ଅଭିପ୍ରାୟ ସାଧନରେ ବିଫଳ ହୋଇ ସେ ବୋଧିସତ୍ତ୍ୱଙ୍କୁ ଭୟ ଦେଖାଇ କହିଲେ, "ତୁମେ ମୋ ପ୍ରସ୍ତାବରେ ସ୍ୱୀକୃତ ହେଲ ନାହିଁ । ମୁଁ ତୁମ ବିରୁଦ୍ଧରେ ରାଜାଙ୍କ ନିକଟରେ ଅଭିଯୋଗ କଲେ ତୁମର ପ୍ରାଣଦଣ୍ଡ ନିଶ୍ଚିତ । ତେଣୁ ପରିଣାମ ଚିନ୍ତା କରି କାର୍ଯ୍ୟ କର ।" ତଥାପି ବୋଧିସତ୍ତ୍ୱ ଅଟଳ ରହି ଉତ୍ତର କଲେ, "ମାଆ, ତୁମର ପ୍ରସ୍ତାବ ମିତ୍ରଦୃଷ୍ଟିରୁ ଓ ଧର୍ମଦୃଷ୍ଟିରୁ ନିତାନ୍ତ ଗର୍ହିତ । ମୋର ପ୍ରାଣ ଯିବ ପଛକେ ମୁଁ ଅନ୍ୟାୟ କାର୍ଯ୍ୟ କରିବି ନାହିଁ ।" ଏହା କହି ସେ ପ୍ରାସାଦରୁ ବାହାରିଗଲେ ।

ଏଣେ ରାଣୀ ଚିନ୍ତା କରିବାକୁ ଲାଗିଲେ, "ଯଦି ବୋଧିସତ୍ତ୍ୱ ଆଗେ ରାଜାଙ୍କୁ ମୋର ଏ ଆଚରଣ ବିଷୟ ଜଣାନ୍ତି ତେବେ ମୋର ପ୍ରାଣ ରହିବ ନାହିଁ । ତେଣୁ ମୁଁ ଆଗେ ତାଙ୍କ ବିରୁଦ୍ଧରେ ରାଜାଙ୍କ ପାଖେ ଅଭିଯୋଗ କରି ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରାଇବି ଓ ବୋଧିସତ୍ତ୍ୱଙ୍କର ଦଣ୍ଡବିଧାନ ହେବ ।" ଏହିପରି ବିଚାରି ସେ ନିଜ ଦେହକୁ କ୍ଷତବିକ୍ଷତ କରି, ଛିନ୍ନ ବସ୍ତ୍ର ପିନ୍ଧି ଗୋଟିଏ ଅନ୍ଧାରୁଆ ଘରେ ଶୋଇରହିଲେ ଓ ନିଜର ଦାସୀଙ୍କୁ କହିଲେ, "ରାଜା ମୋତେ ଖୋଜିଲେ କହିଦେବ ଯେ ମୁଁ ଭୟଙ୍କର ବେମାରରେ ପଡ଼ିଛି ।"

ଯଥାସମୟରେ ଏକ ବିରାଟ ଶୋଭାଯାତ୍ରାରେ ରାଜା ରାଜପ୍ରାସାଦରେ ଉପସ୍ଥିତ ହେଲେ । ରାଣୀଙ୍କୁ ଦେଖି ନ ପାରି ସେ ଦାସୀମାନଙ୍କୁ ପଚାରିଲେ, "ରାଣୀ କାହାନ୍ତି ?"

ଦାସୀମାନେ ରାଣୀଙ୍କର ଦେହ ଭଲ ନାହିଁ ବୋଲି କହି ସେହି ଅନ୍ଧାରୁଆ ଘରକୁ ନେଇଗଲେ ।

ରାଜା ପଚାରିଲେ, "ତୁମର କଅଣ ହୋଇଅଛି ? ଏପରି ଅବସ୍ଥାରେ

ପଡ଼ିଛ କାହିଁକି ?"

ରାଣୀ ଉତ୍ତର କଲେ, "ତୁମେ ଯେଉଁ ଗୁଣବନ୍ତ ପୁଅଙ୍କ ଉପରେ ମୋର ଭାର ଦେଇ ଯାଇଥିଲ, ସେ ମୋର ଏ ଅବସ୍ଥା କରିଅଛନ୍ତି।"

ରାଜା କିଛି ବୁଝି ନ ପାରି ପୁଣି ପଚାରିବାରୁ ରାଣୀ କହିଲେ, "ତୁମେ ପଦ୍ମକୁମାରଙ୍କୁ ଯାହା ମନେକର, ସେ ପ୍ରକୃତରେ ତାହା ନୁହେଁ । ସେ ମୋ ଉପରେ ଅତ୍ୟାଚାର କରିବାକୁ ବସିବାରୁ ମୁଁ କହିଲି—ଏ କଅଣ ? ମୁଁ ତୁମର ମାଆ । ରାଜା ଏହା ଜାଣିଲେ କଅଣ କହିବେ ? ପଦ୍ମକୁମାର କହିଲା—ରାଜା ତ ମୁଁ, ତୁମକୁ ଉପଭୋଗ କରିବାର ଅଧିକାର ମୋର ଅଛି । ମୁଁ ତାଙ୍କ ପାଖରୁ ପଳାଇବାକୁ ଚେଷ୍ଟା କରିବାରୁ ସେ ମୋତେ କ୍ଷତବିକ୍ଷତ କରି ଏଠାରେ ପକାଇଗଲା ।"

ରାଜା ଏହା ଶୁଣି ଏବଂ ରାଣୀଙ୍କର ଛିନ୍ନ ପରିଧାନ ଓ କ୍ଷତବିକ୍ଷତ ଦେହ ଦେଖି ବିଚାରଶକ୍ତି ହରାଇଦେଲେ । ସେ କ୍ରୋଧାନ୍ଧ ହୋଇ କର୍ମଚାରୀମାନଙ୍କୁ ଆଦେଶ ଦେଲେ—"ଯାଅ, ପଦ୍ମକୁମାରକୁ ବାନ୍ଧି ପ୍ରହାର ଦେଇ ମୋ ପାଖକୁ ନେଇଆସ । ତାର ପ୍ରାଣଦଣ୍ଡ ହେବ ।"

ରାଜପୁରୁଷମାନେ ଅଗତ୍ୟା ପଦ୍ମକୁମାରଙ୍କୁ ବାନ୍ଧି, ତାଙ୍କ ଗଳାରେ ମନ୍ଦାରମାଳା ପକାଇ, ପ୍ରହାର କରି କରି ରାଜାଙ୍କ ନିକଟକୁ ଆଣିଲେ । ନଗରବାସୀମାନେ ତାଙ୍କୁ ଅତ୍ୟନ୍ତ ଆଦର କରୁଥିଲେ । ତେଣୁ ସେମାନେ ତାଙ୍କର ଏ ଦୁରବସ୍ଥା ଦେଖି ହାୟ ହାୟ କରିବାକୁ ଲାଗିଲେ । ରାଜା ରାଣୀଙ୍କ ମିଥ୍ୟା ଅପବାଦରେ ପଦ୍ମକୁମାରଙ୍କୁ ପ୍ରାଣଦଣ୍ଡ ଦେବାକୁ ଯାଉଛନ୍ତି—ଏହି କଥା ସମସ୍ତଙ୍କ ତୁଣ୍ଡରୁ ଶୁଣାଗଲା ।

ପଦ୍ମକୁମାରଙ୍କୁ ଦେଖିଲା ମାତ୍ରେ ରାଜା ନିଜକୁ ସମ୍ଭାଳି ନ ପାରି କହିଲେ—ଏ ଦୁଷ୍ଟ ମୋର ପୁଅ ହୋଇଥିଲେ ହେଁ ରାଜ୍ୟର ଘୋର ଶତ୍ରୁ । ସେ ମନେ କରୁଛି ଯେ ସେ ହେଉଛି ରାଜା, ମୁଁ କେହି ନୁହେଁ । ଏ ଅଧମ ରାଣୀଙ୍କ ଉପରେ ଅତ୍ୟାଚାର କରିବାକୁ ବସିଥିଲା । ଏହାକୁ ପର୍ବତ ଶୃଙ୍ଗରୁ ଗଡ଼ାଇ ବଧ କର ।

ବୋଧିସତ୍ତ୍ୱ ବିନୀତ ଭାବରେ କହିଲେ—ମୋ ଉପରେ ଯେଉଁ ଅଭିଯୋଗ ହେଉଅଛି ତାହା ସମ୍ପୂର୍ଣ୍ଣ ମିଥ୍ୟା । କେବଳ ଜଣେ ସ୍ତ୍ରୀର କଥାରେ ବିଶ୍ୱାସ କରି ମୋତେ ପ୍ରାଣଦଣ୍ଡ ଦେବା ଘୋର ଅନ୍ୟାୟ ହେବ । ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ।

ସହସ୍ର ସହସ୍ର ଲୋକ, ରାଜକର୍ମଚାରୀ ଓ ପାତ୍ରମନ୍ତ୍ରୀ ପଦ୍ମକୁମାରଙ୍କ ସପକ୍ଷରେ ଆପତ୍ତି କଲେ; କିନ୍ତୁ ରାଜା କୌଣସି ଅନୁସନ୍ଧାନ ନ କରି ନିଜ ଆଦେଶରେ ଦୃଢ଼ ହୋଇ ରହିଲେ ।

ରାଜକର୍ମଚାରୀ ତଥା ଜନସାଧାରଣ ଦୁଃଖରେ କାନ୍ଦିବାକୁ ଲାଗିଲେ । ରାଜାଙ୍କର ହୃଦୟରେ କୌଣସି ପରିବର୍ତ୍ତନ ହେଲା ନାହିଁ । ସେ ଘାତକ-ମାନଙ୍କୁ ଆଦେଶ ଦେଲେ—"ଏହାକୁ ପର୍ବତଶୃଙ୍ଗରୁ ତଳକୁ ଗଡ଼ାଇ ବଧ କର ।"

କିନ୍ତୁ ବୋଧିସତ୍ତ୍ୱ ସାମାନ୍ୟ ମନୁଷ୍ୟ ନ ଥିଲେ; ତାଙ୍କର ଚରିତ୍ର ନିଷ୍କଳଙ୍କ ଥିଲା ଓ ପରୋପକାରକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ତେଣୁ ପର୍ବତର ଅଧିଷ୍ଠାତ୍ରୀ ଦେବତା ତାଙ୍କୁ ସାହାଯ୍ୟ କଲେ । ରାଜପୁରୁଷମାନେ ତାଙ୍କୁ ପର୍ବତ ତଳକୁ ଗଡ଼ାଇ ଦେଲାମାତ୍ରେ ଦେବତା ତାଙ୍କୁ ଦୁଇ ହାତରେ ଧରି ଆଲିଙ୍ଗନ କଲେ ଏବଂ ତାଙ୍କୁ ନେଇ ନାଗପୁରରେ ରଖିଦେଲେ । ନାଗରାଜା ବୋଧିସତ୍ତ୍ୱଙ୍କୁ ସ୍ୱାଗତ ଜଣାଇ ପାତାଳପୁରରେ ରଖିଲେ ଏବଂ ତାଙ୍କୁ ନିଜର ରାଜ୍ୟର ଅଧେ ଅର୍ପଣ କଲେ । କିନ୍ତୁ ଏକ ବର୍ଷ ପରେ ବୋଧିସତ୍ତ୍ୱ ପୁନର୍ବାର ମାନବସମାଜକୁ ଫେରି ଆସିବାକୁ ଇଚ୍ଛା ପ୍ରକାଶ କଲେ । ନାଗରାଜା ତାଙ୍କ ଇଚ୍ଛାରେ ବାଧା ନ ଦେଇ ତାଙ୍କୁ ହିମାଳୟର ଗୋଟିଏ ସ୍ଥାନରେ ଛାଡ଼ିଦେଇ ଆସିଲେ । ବୋଧିସତ୍ତ୍ୱ ସନ୍ନ୍ୟାସୀ ବେଶ ଧାରଣ କରି ଜପ, ଧ୍ୟାନ ଓ ତପସ୍ୟାରେ କାଳାତିପାତ କରିବାକୁ ଲାଗିଲେ । ପର୍ଣ୍ଣକୁଟୀରରେ ବାସ ଓ ବନର ଫଳମୂଳ ତାଙ୍କ ଜୀବନରକ୍ଷାର ଅବଲମ୍ବନ ଥିଲା ।

ଏହି ମଧ୍ୟରେ ବାରାଣସୀର ଜଣେ କାଷ୍ଠ ବ୍ୟବସାୟୀ ବ୍ୟବସାୟ

ସମ୍ପର୍କରେ ହିମାଳୟ ଅଞ୍ଚଳକୁ ଯାଇ ବୋଧିସତ୍ତ୍ୱଙ୍କୁ ଦେଖିଲା । ଦୁହିଁଙ୍କ ମଧ୍ୟରେ ସାମାନ୍ୟ କଥୋପକଥନ ପରେ ବ୍ୟବସାୟୀ ବୋଧିସତ୍ତ୍ୱଙ୍କୁ ଚିହ୍ନି ପାରିଲା । ବ୍ୟବସାୟୀ ଆଶ୍ରମରେ କିଛିଦିନ କଟାଇ ବାରାଣସୀକୁ ଫେରି ଆସିଲେ ଓ ରାଜାଙ୍କୁ ବୋଧିସତ୍ତ୍ୱଙ୍କର ସମ୍ବାଦ ଦେଲେ । ଯାହାଙ୍କୁ ପର୍ବତ ଶିଖରରୁ ଗଡ଼ାଇ ବଧ କରାଯାଇଥିଲା ସେ ଯେ ହିମାଳୟରେ ସନ୍ନ୍ୟାସୀଜୀବନ ଯାପନ କରୁଛନ୍ତି, ରାଜା ଏହା ବିଶ୍ୱାସ କରିପାରିଲେ ନାହିଁ । ପରେ ବିଶ୍ୱାସଯୋଗ୍ୟ ପ୍ରମାଣ ପାଇ ବହୁ ଅନୁଚର ସହିତ ହିମାଳୟକୁ ଯାଇ ବନର ବହିର୍ଭାଗରେ ଶିବିର ପକାଇ ରହିଲେ । ଦିନେ ସେ ପାତ୍ର-ଅମାତ୍ୟମାନଙ୍କୁ ନେଇ ବୋଧିସତ୍ତ୍ୱଙ୍କୁ ଦର୍ଶନ କରିବାକୁ ଗଲେ । ବୋଧିସତ୍ତ୍ୱ ସମ୍ମାନ ସତ୍କାରେ ପିତାଙ୍କୁ ଅଭ୍ୟର୍ଥନା କଲେ ଓ ଫଳମୂଳ ଭୋଜନ କରିବାକୁ ଦେଲେ । ଏ ବ୍ୟବହାରରେ ରାଜା ଲଜ୍ଜିତ ଓ ଅନୁତପ୍ତ ହୋଇ ପଚାରିଲେ—"ବତ୍ସ, ତୁମେ କପରି ପର୍ବତଶୃଙ୍ଗରୁ ପ୍ରାଣ ରକ୍ଷାକଲ, ତାହା କହ ।"

ତହୁଁ ବୋଧିସତ୍ତ୍ୱ ପର୍ବତ ଦେବତା ଓ ନାଗରାଜାଙ୍କ ସାହାଯ୍ୟ ବିଷୟ ବର୍ଣ୍ଣନା କରିଗଲେ ।

ରାଜା ବୋଧିସତ୍ତ୍ୱଙ୍କୁ ଫେରାଇ ନେବାପାଇଁ ପ୍ରବର୍ତ୍ତାଇଲେ; କିନ୍ତୁ ବୋଧିସତ୍ତ୍ୱ କୌଣସିମତେ ବାରାଣସୀକୁ ଫେରିଯାଇ ଆଡ଼ମ୍ବରପୂର୍ଣ୍ଣ ଜୀବନ ଯାପନ କରିବାକୁ ସ୍ୱୀକୃତ ହେଲେ ନାହିଁ । ସେ କହିଲେ—"ସାଂସାରିକ ବାସନା ତ୍ୟାଗ କରି ମୁଁ ସ୍ୱର୍ଗୀୟ ସୁଖ ଭୋଗ କରୁଅଛି । ରାଜପଦର ସୁଖ ତା ନିକଟରେ ନିତାନ୍ତ ତୁଚ୍ଛ । ଆପଣ ଧର୍ମ ଓ ନ୍ୟାୟରେ ରାଜ୍ୟଶାସନ କରି ସୁଖରେ ରହନ୍ତୁ, ଏହା ହିଁ ମୋର ଇଚ୍ଛା ।" ଏହିପରି ବୋଧିସତ୍ତ୍ୱ ରାଜାଙ୍କୁ ରାଜଧର୍ମ ବିଷୟରେ ଅନେକ ଉପଦେଶ ଦେଇ ବିଦାୟ ଦେଲେ ।

ଘୋର ଅନୁତାପାନଳରେ ଦଗ୍ଧ ହୋଇ ରାଜା ପାତ୍ରମନ୍ତ୍ରୀମାନଙ୍କୁ ପଚାରିଲେ—"ମୋର ପୁଅ ବୋଧିସତ୍ତ୍ୱ କେଡ଼େ କ୍ଷମା, ଧାର୍ମିକ ଓ ସଦାଚାରୀ, ତାହା ମୁଁ ଏବେ ବୁଝି ପାରୁଛି । କାହା କୁବେଚନାରେ ମୁଁ ତାଙ୍କୁ ପ୍ରାଣଦଣ୍ଡ

ଦେବାକୁ ଯାଇଥିଲ ?" ସେମାନେ କହିଲେ—"ରାଣୀଙ୍କ କଥାରେ ଭୁଲି ଆପଣ ଏପରି ଅନ୍ୟାୟ ଆଦେଶ ଦେଇଥିଲେ । ତେଣୁ ଦୋଷ ଆପଣଙ୍କର ନୁହେଁ; ରାଣୀଙ୍କର ।"

ରାଜା ନଗରରେ ପହଞ୍ଚି ରାଣୀଙ୍କର ପ୍ରାଣଦଣ୍ଡର ଆଦେଶ ଦେଲେ । ତାଙ୍କୁ ପର୍ବତଶୃଙ୍ଗରୁ ନିକ୍ଷେପ କରି ବଧ କରାଗଲା । ବୋଧିସତ୍ତ୍ୱଙ୍କର ଉପଦେଶ ଅନୁସାରେ ରାଜା ପ୍ରଜାମାନଙ୍କୁ ଶାସନ କରି ମୃତ୍ୟୁ ପରେ ସ୍ୱର୍ଗରାଜ୍ୟର ଅଧିକାରୀ ହେଲେ ।

## ସୁଜାତା ଜାତକ

ଏକ ଜନ୍ମରେ ବୋଧିସତ୍ତ୍ୱ ବାରଣସୀର ରାଜା ବ୍ରହ୍ମଦତ୍ତଙ୍କର ମନ୍ତ୍ରୀ ହୋଇଥିଲେ । ସେ ରାଜାଙ୍କୁ ରାଜକାର୍ଯ୍ୟରେ ପରାମର୍ଶ ଦେବା ସଙ୍ଗେ ଧର୍ମ ଉପଦେଶ ମଧ୍ୟ ଦେଉଥିଲେ ।

ଥରେ ରାଜା ରାଜପ୍ରାସାଦର ଝରକାପାଖରେ ଛିଡ଼ାହୋଇ ବାହାରର ଦୃଶ୍ୟ ଦେଖୁଥିଲେ । ଏହି ସମୟରେ ଗୋଟିଏ ବାଳିକା ରାଜମାର୍ଗରେ କୋଳି ବିକିବାକୁ ଯାଉଥିଲା । ସେ ଡାକୁଥିଲା, "ଜାମୁକୋଳି, ପାଚିଲା ଜାମୁକୋଳି, କିଏ ନେବ ମିଠା ଜାମୁକୋଳି !" ରାଜା ଦେଖିଲେ, ଝିଅଟି ମଇଳା ଚିରା-ଲୁଗା ପିନ୍ଧିଛି, ମୁଣ୍ଡର ବାଳ ଫୁରୁଫୁରୁ ଉଡ଼ୁଛି; ଗୋଟିଏ ଡାଲାରେ କୋଳି ଧରିଛି । କିନ୍ତୁ ତାର ରୂପଟି ଅତି ସୁନ୍ଦର; ସ୍ୱର ମଧ୍ୟ ମଧୁର । ତାକୁ ଦେଖିଲା କ୍ଷଣି ରାଜାଙ୍କର ମନ ତାହାପ୍ରତି ଆକୃଷ୍ଟ ହେଲା । ସେ ତାକୁ ଡକାଇ ବୁଝିଲେ ଯେ ତାର ନାମ ସୁଜାତା । ସେ ଗୋଟିଏ ଦରିଦ୍ର ଲୋକର ଝିଅ । କୋଳି ବିକି ପେଟ ପୋଷେ । ତାର ବିବାହ ହୋଇନାହିଁ । ତେବେ ସେ ତାର ପିତାକୁ ଡକାଇଲେ ଓ ସେ ଝିଅଟିକୁ ବିବାହ କରିବାର ଇଚ୍ଛା

ଜଣାଇଲେ । କନ୍ୟାର ପିତା ଏହି ପ୍ରସ୍ତାବରେ ଆନନ୍ଦରେ ରାଜି ହୋଇଗଲା ।

ମହା ଆଡ଼ମ୍ବରରେ ବିବାହ ହୋଇଗଲା । ଯେଉଁ ସୁଜାତା ତରକାରୀ ପିନ୍ଧି କୋଳି ବିକୁଥିଲା, ସେ ହେଲା ବାରାଣସୀର ରାଜରାଣୀ । ଶହ ଶହ ଦାସୀ ତାକୁ ଖଟିଲେ । ତାର ବସନ ଭୂଷଣର କିଛି ଅଭାବ ରହିଲା ନାହିଁ । ସବୁ ରାଣୀଙ୍କ ଭିତରେ ତାର ଆସନ ଉଚ୍ଚ ହେଲା ।

ଏହିପରି କିଛିଦିନ ଗଲା । ଦିନେ ରାଜା ଓ ରାଣୀ ବସିଛନ୍ତି । ଜଣେ ଦାସୀ ଗୋଟିଏ ସୁନା ଥାଳିଆରେ କିଛି ଜାମୁକୋଳି ଆଣି ରାଜା ଓ ରାଣୀଙ୍କ ଖାଇବା ପାଇଁ ରଖିଦେଲା । ସେତେବେଳେ ସେମାନଙ୍କ ପାଖରେ ବୋଧିସତ୍ତ୍ୱଙ୍କ ଛଡ଼ା ଆଉ କେହି ନ ଥିଲେ ।

ରାଜା ଗୋଟିଏ କୋଳି ଖାଇବାକୁ ଯାଉଛନ୍ତି, ଏହି ସମୟରେ ରାଣୀ ସୁଜାତା କହିଲେ, "ଏ ଟିକି ଟିକି ଗୋଲ ଗୋଲ ଫଳଗୁଡ଼ାକ କଅଣ ? କେଡ଼େ ଲାଲ ଦିଶୁଛି ? ଏ କେଉଁ ଗଛରେ ଫଳେ ? ଖାଇଲେ ମିଠା ଲାଗିବ କି ଖଟା ଲାଗିବ ?"

ଏହା ଶୁଣି ରାଜା ରାଗିଉଠି କହିଲେ, "ଏ କୋଳି ତୁ ଚିହ୍ନି ପାରୁନାହୁଁ । ତୁ ପରା ଏଇ କୋଳି ବିକିବା ପାଇଁ ସହରସାରା ବୁଲୁଥିଲୁ ? ତୋର ବାପ ଅଜା ସାତପୁରୁଷ ଏଇ କୋଳି ବିକି ଚଳି ଆସୁଥିଲେ । ଆଜି ତୁ ମୋର ରାଣୀ ହେବାରୁ ତୋର ଏତେ ଗର୍ବ ହେଲା ଯେ ତୁ ପଚାରୁଛୁ, 'ଏଗୁଡ଼ାକ କି କୋଳି ?' ତୁ ମୋର ରାଣୀ ହେବାକୁ ଯୋଗ୍ୟ ନୋହୁ । ଆଜିଠାରୁ ତୋର ଏ ରାଜପ୍ରାସାଦରେ ସ୍ଥାନ ନାହିଁ । ପୁଣି କୋଳି ବିକି ବୁଲିବୁ ଯାଆ ।"

ବୋଧିସତ୍ତ୍ୱ ଦେଖିଲେ ଯେ ରାଜାଙ୍କର ଭୟଙ୍କର କ୍ରୋଧ ହୋଇଅଛି । ସେ ରାଣୀ ସୁଜାତାଙ୍କୁ ବାହାର କରିଦେବେ । ରାଜାଙ୍କର କ୍ରୋଧ ଶାନ୍ତ କରିବାକୁ ହେବ ।

ସେ ବିନୀତ ଭାବରେ କହିଲେ, "ମହାରାଜ, ଆପଣ କ୍ରୋଧ ପ୍ରକାଶ

କରିବା ସୁନ୍ଦର ନୁହେ । ନାରୀଜାତିର ପ୍ରକୃତି ଏହିପରି । ସେମାନେ ନୀଚ ଆସନରୁ ଉଚ୍ଚ ଆସନକୁ ଉଠିଲେ ନୀଚ କଥା ସବୁ ଭୁଲିଯାନ୍ତି । ରାଣୀ ଯେତେ ବଡ଼ ହେଲେ ମଧ୍ୟ ନାରୀ । ତେଣୁ ଆପଣ ଉଦାର ଭାବରେ ତାଙ୍କୁ କ୍ଷମା ଦିଅନ୍ତୁ । ଆପଣ ହିଁ ତାଙ୍କୁ ଏହି ଉଚ୍ଚ ପଦ ଦେଇ ଅଛନ୍ତି । ଅତଏବ ତାଙ୍କର ଦୋଷ ଧରିବା ଉଚିତ ନୁହେଁ ।"

ବୋଧିସତ୍ତ୍ୱଙ୍କର କଥାରେ ରଜାଙ୍କର କ୍ରୋଧ ଶାନ୍ତ ହୋଇଗଲା । ସେ ରାଣୀଙ୍କର ଔଦ୍ଧତ୍ୟ ମାର୍ଜନା କରି ପୁଣି ତାଙ୍କୁ ପୂର୍ବ ଆସନରେ ପ୍ରତିଷ୍ଠିତ କଲେ । ସୁଜାତା ମଧ୍ୟ ନିଜର ଭ୍ରମ ବୁଝିପାରି ଆଉ ଗର୍ବ କଲେ ନାହିଁ । ରାଜା ଓ ରାଣୀଙ୍କ ମଧ୍ୟରେ ପୂର୍ବ ସମ୍ବନ୍ଧ ଫେରି ଆସିଲା ।

## ଜବଶକୁନ ଜାତକ

ଏକ ସମୟରେ ବୋଧିସତ୍ତ୍ୱ କାଠହଣା ପକ୍ଷୀଜନ୍ମ ଲାଭ କରି ହିମାଳୟର ଅରଣ୍ୟରେ ଗୋଟିଏ ବୃକ୍ଷରେ ବାସ କରୁଥିଲେ ।

ସେହି ବନମଧ୍ୟରେ ଗୋଟିଏ ସିଂହ ବାସ କରୁଥିଲା । ଦିନେ ଏକ ସିଂହ ଗୋଟିଏ ହରିଣ ମାରି ସେହି ବୃକ୍ଷମୂଳରେ ତାହାକୁ ଖାଉଥିଲା । ଏହି ସମୟରେ ହରିଣର ଖଣ୍ଡିଏ ହାଡ଼ ସିଂହର ଗଳାରେ ଲାଗି ରହିଲା । ସିଂହ ଏହାକୁ ବାହାର କରିବା ପାଇଁ ବହୁତ ଚେଷ୍ଟା କଲେ ହେଁ ହାଡ଼ ଖଣ୍ଡିକ ବାହାରିଲା ନାହିଁ । କ୍ରମେ ତାହାର ଗଳା ଫୁଲିଗଲା ଓ ସେ କିଛି ଆହାର କରି ପାରିଲା ନାହିଁ, ଯନ୍ତ୍ରଣାରେ ଛଟପଟ ହୋଇ ଚିତ୍କାର କଲା । ବୋଧିସତ୍ତ୍ୱ ନିଜର ଆହାର ଖୋଜୁ ଖୋଜୁ ସିଂହର ଏପ୍ରକାର ଦୁରବସ୍ଥା ଦେଖି ପଚାରିଲେ, "ବନ୍ଧୁ, ତୁମର କଅଣ ହୋଇଅଛି ? ଏପରି କଷ୍ଟର କାରଣ କଅଣ ?" ସିଂହ ସମସ୍ତ ଘଟନା ଜଣାଇବାରୁ ବୋଧିସତ୍ତ୍ୱ କହିଲେ, "ମୁଁ ତୁମର ଏହି

ଯନ୍ତ୍ରଣା ଦୂର କରିପାରିବ । ମୋର ଲମ୍ବ ଥଣ୍ଟରେ ମୁଁ ତୁମ ଗଳାରୁ ହାଡ଼ ଖଣ୍ଡିକ ଟାଣିଆଣି ପାରିବ । କିନ୍ତୁ ମୋର ଭୟ ହେଉଛି, କାଳେ ତୁମେ ପାଟି ବନ୍ଦ କରିଦେଇ ମୋତେ ଖାଇଦେବ ।"

ସିଂହ କହିଲା, "ବନ୍ଧୁ, ତୁମେ ଏପରି ଭୟ କରୁଛ କାହିଁକି ? ମୁଁ ବଡ଼ କଷ୍ଟ ପାଉଛି । ତୁମେ ହାଡ଼ ଖଣ୍ଡିକ ବାହାର କରି ଆଣିଲେ ମୋର ଜୀବନ ରକ୍ଷା ହେବ । ତୁମର ଏ ଉପକାର ଜୀବନରେ ଭୁଲିବି ନାହିଁ ।"

କିନ୍ତୁ ବୋଧିସତ୍ତ୍ୱ ସିଂହର କଥାରେ ପୂରା ବିଶ୍ୱାସ କରି ପାରିଲେ ନାହିଁ । ସେ ସିଂହର ପାଟିକୁ ମେଲାକରି ତା ମଝିରେ ଖଣ୍ଡିଏ କାଠି ରଖିଦେଲେ । ତେଣୁ ସିଂହ ପାଟି ବନ୍ଦ କରିବାର ଆଶଙ୍କା ରହିଲା ନାହିଁ । ତାପରେ ସେ ସିଂହର ପାଟିରେ ପ୍ରବେଶ କଲେ ଓ ଥଣ୍ଟରେ ହାଡ଼ର ଅଗକୁ ଧରି ଟାଣି ଆଣିଲେ । ହାଡ଼ଟିକୁ ବାହାରେ ଫିଙ୍ଗିଦେଇ ବୋଧିସତ୍ତ୍ୱ ସିଂହର ତୁଣ୍ଡରୁ ବାହାରି ଆସିଲେ ଓ କାଠିଖଣ୍ଡିକ ଟାଣିଆଣି ଗଛ ଉପରକୁ ଉଡ଼ିଗଲେ । ସିଂହ କ୍ରମେ ପୂରା ଭଲ ହୋଇଗଲା ।

କିଛିଦିନ ବିତିଗଲା । ଦିନେ ସିଂହ ଗୋଟିଏ ମଇଁଷି ମାରି ସେହି ଗଛ ମୂଳେ ଖାଉଥିଲା । ବୋଧିସତ୍ତ୍ୱ ବିଚାର କଲେ, "ଏ ସିଂହ କହିଥିଲା, ମୋ ଉପକାର ଜୀବନରେ ଭୁଲିବ ନାହିଁ । ଆଜି ତାକୁ ପରୀକ୍ଷା କରି ଦେଖିବା ।" ସେ ଗଛର ଗୋଟିଏ ଡାଳରେ ବସି ସିଂହକୁ କହିଲେ, "ବନ୍ଧୁ, ଦିନେ ମୁଁ ଯଥାଶକ୍ତି ତୁମକୁ ସାହାଯ୍ୟ କରିଥିଲି । ଆଜି ମୋର ଟିକିଏ ଉପକାର କରିପାରିବ ?"

ଏତିକି ଶୁଣିଲା କ୍ଷଣି ସିଂହ ରାଗରେ କହିଲା, "ତୋର ସାହସ ତ କମ୍ ନୁହେଁ । ମୋର ଏ ପାଟି, ଏ ଦାନ୍ତ ଦେଖୁଛୁ ତ ! ତୁ ଯେ ମୋ ପାଟିରେ ପଶି ପ୍ରାଣ ଘେନି ଫେରି ଆସିଲୁ, ସେଇ ତ ମୋର ଯଥେଷ୍ଟ ଦୟା । କେଉଁ ସାହସରେ ତୁ ମୋଠାରୁ ଆହୁରି ଉପକାର ଆଶା କରୁଛୁ ?"

ଏହା ଶୁଣି ବୋଧିସତ୍ତ୍ୱ କହିଲେ, "ଯିଏ କୃତଘ୍ନ, ତାହାଠାରୁ କୃତଜ୍ଞତା

ଆଶା କରିବା ବୃଥା । ବରଂ ତାହା ପ୍ରତି କ୍ରୋଧ ଓ ହିଂସା ପ୍ରକାଶ ନ କରି ତା ପାଖରୁ ଦୂରକୁ ଚାଲିଯିବା ଭଲ ।”

ଏହା କହି ସେ ସିଂହପାଖରୁ ଦୂରରେ ରହିବାକୁ ଲାଗିଲେ ।

## କର୍କଟ ଜାତକ

ହିମାଳୟ ପ୍ରଦେଶରେ ଗୋଟିଏ ବୃହତ୍ ହ୍ରଦ ଥିଲା । ତାହାର ଏକ ଅଂଶରେ ଗୋଟିଏ ପ୍ରକାଣ୍ଡ କର୍କଟ ବାସ କରୁଥିଲା । ଏହି ଅଂଶଟିକୁ ଲୋକେ କର୍କଟ-ଚକ୍ର ବୋଲି କହୁଥିଲେ । ଏପରି ବିରାଟ କର୍କଟ କେବେ ଦେଖାଯାଇ ନ ଥିଲା । ଏହା ଆକାରରେ ଏକ ପ୍ରକାଣ୍ଡ ଗୋଲାକାର ପ୍ରାଙ୍ଗଣ ପରି ଥିଲା । ତାହାର ଦେହରେ ଏତେ ଶକ୍ତି ଥିଲା ଯେ ହସ୍ତୀମାନେ ହ୍ରଦର ସେହି ଅଂଶ ନିକଟକୁ ଗଲେ ସେ ସେମାନଙ୍କୁ ଧରି ନେଇ ଭକ୍ଷଣ କରୁଥିଲା । ସେହି ହେତୁରୁ ହସ୍ତୀମାନେ ତାହା ନିକଟକୁ ଯିବାକୁ ସାହସ କରୁ ନଥିଲେ ।

ହ୍ରଦର ନିକଟବର୍ତ୍ତୀ ବନରେ ଦଳେ ହସ୍ତୀ ବାସ କରୁଥିଲେ । ଏହି ଦଳର ଦଳପତିଙ୍କ ପତ୍ନୀର ଗର୍ଭ ହେବାରୁ ସେ କହିଲେ, “ନିକଟରେ ସେ ଭୀଷଣ କର୍କଟ ରହିଛି । ମୋର ଏଠାରେ ରହିବାକୁ ଭୟ ହେଉଅଛି । ଚାଲ, କୌଣସି ନିରାପଦ ସ୍ଥାନକୁ ଚାଲିଯିବା ।” ଦଳପତି ପତ୍ନୀର ଅନୁରୋଧରେ ଗୋଟିଏ ଦୂରବର୍ତ୍ତୀ ସ୍ଥାନକୁ ଚାଲିଗଲେ । ଯଥାସମୟରେ ବୋଧିସତ୍ତ୍ୱ ଏହି ହସ୍ତିନୀର ଗର୍ଭରୁ ତାର ପୁତ୍ରରୂପେ ଜନ୍ମଗ୍ରହଣ କଲେ ।

ବୟସର ବୃଦ୍ଧି ସଙ୍ଗେ ବୋଧିସତ୍ତ୍ୱଙ୍କର ଶରୀର ବୃଦ୍ଧି ପାଇଲା । ସେ ଗୋଟିଏ କଜ୍ଜଳ ପର୍ବତ ପରି ଦେଖାଗଲେ । ଶାରୀରିକ ବଳ ଓ ବୁଦ୍ଧିରେ ସେ ହସ୍ତୀମାନଙ୍କ ମଧ୍ୟରେ ଅତୁଳନୀୟ ହୋଇ ଉଠିଲେ । ଯୌବନ ଉପସ୍ଥିତ ହେବାରୁ ସେ ଗୋଟିଏ ସୁନ୍ଦରୀ ହସ୍ତିନୀକୁ ନିଜର ପତ୍ନୀରୂପେ ଗ୍ରହଣ କଲେ ।

ବୋଧିସତ୍ତ୍ୱ ମାତାଙ୍କ ଠାରୁ କର୍କଟର ଅତ୍ୟାଚାରର କଥା ଶୁଣି ପାରିଲେ । ତହୁଁ ସେ ତାକୁ ମାରିବାକୁ ବାହାରିଲେ । ତାହା ଜାଣିପାରି ପିତା କହିଲେ, "ତୁ ଏଭଳି ବୃଥା ଚେଷ୍ଟା କରନା । ସେ ଏତେ ବଳଷ୍ଠ ଯେ ତୁ ତାକୁ ବଧ କରିପାରିବୁ ନାହିଁ ।" କିନ୍ତୁ ବୋଧିସତ୍ତ୍ୱ ବାରମ୍ବାର ପିତାଙ୍କୁ ଅନୁରୋଧ କଲେ, "ପିତଃ, ମୋତେ ଅନୁମତି ଦିଅନ୍ତୁ । ମୁଁ ସେ ଦୁଷ୍ଟ କର୍କଟକୁ ବଧ କରି ହସ୍ତୀଯୂଥକୁ ତାର ଉପଦ୍ରବରୁ ରକ୍ଷା କରିବି ।" ଶେଷରେ ପିତା ଅନୁମତି ଦେଲେ ।

ବୋଧିସତ୍ତ୍ୱ ସମସ୍ତ ହସ୍ତୀଙ୍କୁ ନେଇ କର୍କଟ ହ୍ରଦର ନିକଟରେ ଉପସ୍ଥିତ ହେଲେ । ସେ ହସ୍ତୀମାନଙ୍କୁ ପଚାରିଲେ, "ସେ ଦୁଷ୍ଟ କର୍କଟ କେତେବେଳେ ହସ୍ତୀମାନଙ୍କୁ ଆକ୍ରମଣ କରେ ? ଗହ୍ୱରରେ ପ୍ରବେଶ କଲାବେଳେ କି ଗହ୍ୱରରେ ଥିବା ଅବସ୍ଥାରେ ଅଥବା ହ୍ରଦରରୁ ଫେରି ଆସିବା ସମୟରେ ?" ସମସ୍ତେ କହିଲେ ଯେ ଗହ୍ୱରରୁ ଫେରି ଆସିବାବେଳେ ହିଁ କର୍କଟ ହସ୍ତୀମାନଙ୍କୁ ଧରି ଖାଏ । ତହୁଁ ବୋଧିସତ୍ତ୍ୱ କହିଲେ, "ତୁମ୍ଭେମାନେ ହ୍ରଦରେ ପ୍ରବେଶ କରି ଯଥେଚ୍ଛା ଭୋଜନ କର । ମୁଁ ସମସ୍ତଙ୍କ ପଛରେ ରହିଥିବି । ଭୋଜନ ପରେ ତୁମ୍ଭେମାନେ ହ୍ରଦ ଉପରକୁ ଚାଲିଆସିବ । ମୁଁ ସମସ୍ତଙ୍କ ଶେଷରେ ଆସିବି ।"

ତାହା ହିଁ କରାଗଲା । ଅନ୍ୟ ହସ୍ତୀମାନେ ଚାଲିଆସିଲେ । ଏହି ସମୟରେ କର୍କଟ ତାର ବିଶାଳ ଗୋଡ଼ ଦୁଇଟିରେ ବୋଧିସତ୍ତ୍ୱଙ୍କୁ ଧରିଲା । ସନ୍ତୁଆସି ପରି ତାର ଦୃଢ଼ ଗୋଡ଼ରେ ବୋଧିସତ୍ତ୍ୱ ବନ୍ଧହୋଇ ରହିଲେ । ସେତେବେଳକୁ ତାଙ୍କ ପାଖରେ ନିଜର ପତ୍ନୀ ଛଡ଼ା ଅନ୍ୟ କୌଣସି ହସ୍ତୀ ନଥିଲେ । ବୋଧିସତ୍ତ୍ୱ କର୍କଟକୁ ଟାଣିନେବାକୁ ଯଥାସାଧ୍ୟ ଚେଷ୍ଟା କଲେ । ତାଙ୍କର ସକଳ ଉଦ୍ୟମ ସତ୍ତ୍ୱେ କର୍କଟ ସ୍ୱସ୍ଥାନରୁ ଲବମାତ୍ର ଘୁଞ୍ଚିଲା ନାହିଁ । ବରଂ କର୍କଟ ବୋଧିସତ୍ତ୍ୱଙ୍କୁ ନିଜ ଆଡ଼କୁ କିଛି ଦୂର ଟାଣିନେଲା । ବୋଧିସତ୍ତ୍ୱ ଭୟରେ ଗର୍ଜନ କରି ସଙ୍ଗୀମାନଙ୍କୁ ସାହାଯ୍ୟ ଦେବାପାଇଁ ଡାକିଲେ । ଅନ୍ୟ ହସ୍ତୀମାନେ ତାଙ୍କୁ ସାହାଯ୍ୟ କରିବାକୁ ଆସିବା ପରିବର୍ତ୍ତେ

ଭୟରେ ପଳାଇବାକୁ ଲଗିଲେ । ଶେଷରେ ବୋଧିସତ୍ତ୍ୱଙ୍କ ପତ୍ନୀ ମଧ୍ୟ ଭୟ କରି ପଳାଇବାକୁ ବସିଲେ । ଏହା ଦେଖି ବୋଧିସତ୍ତ୍ୱ ପତ୍ନୀଙ୍କୁ କହିଲେ, "ତୁମେ ଚାଲିଯାଅନା, ଆମେ ଆଜୀବନ ପ୍ରୀତିଡୋରରେ ବନ୍ଧା । ଦେଖ, ଏ ଭୀଷଣ କର୍କଟ ତାର ଗୋଡ଼ରେ ମୋତେ ଧରି ଟାଣୁଛି । ଏ ବିପଦରେ ତୁମେ ମୋତେ ଛାଡ଼ିଯାଉଛ କିପରି ?"

ଏହା ଶୁଣି ବୋଧିସତ୍ତ୍ୱଙ୍କ ପତ୍ନୀ ପଳାଇ ନ ଯାଇ ସେହିଠାରେ ରହି କହିଲେ, "ନା, ନା, ମୁଁ ପଳାଇ ଯିବିନାହିଁ । ତୁମେ ମୋର ପତି, ମୋର ଜୀବନସର୍ବସ୍ୱ । ଜଗତରେ ତୁମ ଭଳି ମୋର କିଏ ପ୍ରିୟ ଅଛି ? ତୁମକୁ ଛାଡ଼ି ମୁଁ ଯାଇ ନ ପାରେ ।" ତତ୍ପରେ ସେ କର୍କଟକୁ ପ୍ରାର୍ଥନା କଲେ, "ହେ ମହାଭାଗ, ସମୁଦ୍ରରେ, ଗଙ୍ଗାରେ, ନର୍ମଦାରେ ଓ ଅନ୍ୟ ନଦୀମାନଙ୍କରେ କେତେ କର୍କଟ ନାହାନ୍ତି ? କିନ୍ତୁ ଆପଣଙ୍କ ପରି ଶକ୍ତିଶାଳୀ ଓ କ୍ଷମାଶୀଳ କିଏ ଅଛି ? ମୋର ବିନୀତ ପ୍ରାର୍ଥନା, ଆପଣ ମୋର ସ୍ୱାମୀଙ୍କୁ ମୁକ୍ତ ଦିଅନ୍ତୁ ।"

ହସ୍ତିନୀର ଏହି କରୁଣ ନିବେଦନରେ କର୍କଟର ମନ ନରମ ହୋଇଗଲା । ସେ ତାର ଗୋଡ଼ ଦୁଇଟିକୁ ଶିଥିଳ କରିଦେଲା । ବୋଧିସତ୍ତ୍ୱ ତାହାଠାରୁ ମୁକ୍ତ ପାଇବା ପରେ ସେ କ'ଣ କରିବେ ତାହା ମୂର୍ଖ କର୍କଟ ଆଦୌ କଳ୍ପନା କରିପାରି ନଥିଲା । ବୋଧିସତ୍ତ୍ୱ କର୍କଟର ଗୋଡ଼ରୁ ମୁକ୍ତ ହେଲା ମାତ୍ରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି କର୍କଟର ପୃଷ୍ଠଦେଶରେ ପଦାଘାତ କଲେ । ଏହା ଫଳରେ ତାର ପୃଷ୍ଠ ଖଣ୍ଡବିଖଣ୍ଡ ହୋଇଗଲା ଓ ଚକ୍ଷୁ ଦୁଇଟି ବାହାରି ପଡ଼ିଲା । ଇତ୍ୟବସରେ ଅନ୍ୟ ହସ୍ତୀମାନେ ଦଉଡ଼ି ଆସି ତାହାର ସମସ୍ତ ଶରୀରକୁ ଚୂର୍ଣ୍ଣୀଭୂତ କରିଦେଲେ । ତାହାର ଗୋଡ଼ ଦୁଇଟି ଶରୀରରୁ ବିଚ୍ୟୁତ ହୋଇପଡ଼ିଲା ।

ଗଙ୍ଗା ନଦୀ ଏହି ହ୍ରଦର ନିକଟବର୍ତ୍ତୀ ହୋଇଥିବାରୁ ବନ୍ୟା ସମୟରେ ଏହାର ଜଳ ହ୍ରଦରେ ପ୍ରବେଶ କରି ତାକୁ ଜଳପୂର୍ଣ୍ଣ କରିଦେଲା । ବନ୍ୟା ଜଳ କମିଯିବାରୁ ହ୍ରଦର କେତେକ ଜଳ ସ୍ରୋତ ଆକାରରେ ଗଙ୍ଗାରେ ପ୍ରବେଶ କଲା । କର୍କଟର ଦୁଇଟି ଗୋଡ଼ ମଧ୍ୟରୁ ଗୋଟିଏ ସମୁଦ୍ରକୁ ଭାସିଗଲା ।

ଅନ୍ୟଟି ଖଙ୍ଗାରେ ଭାସି ଯାଉଥିବା ସମୟରେ କେତେକ ରାଜପୁତ୍ର ତଟରେ କ୍ରୀଡ଼ା କରୁଥିଲେ । ସେମାନେ ଏହି ବଡ଼େ ଗୋଡ଼ଟିକୁ ଟେକିନେଲେ । ସେତେବେଳକୁ ଏହା ଭିତରେ ମାଂସର ସତ୍ତ୍ୱ ନ ଥିଲା । ସେମାନେ ଏଥିରେ ଗୋଟିଏ ବାଦ୍ୟଯନ୍ତ୍ର ପ୍ରସ୍ତୁତ କରି ତାହାର ନାମ ଦେଲେ 'ଆଣକ' । ଯେଉଁ ଗୋଡ଼ଟି ସମୁଦ୍ରକୁ ଭାସି ଯାଇଥିଲା, ତାହାକୁ ନେଇ ଅସୁରମାନେ ମଧ୍ୟ 'ଆଳମ୍ବର' ନାମରେ ଗୋଟିଏ ବାଦ୍ୟଯନ୍ତ୍ର ପ୍ରସ୍ତୁତ କଲେ । ଅସୁରମାନେ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କଲାବେଳେ ପରାସ୍ତ ହୋଇ ଏହି ବାଦ୍ୟଯନ୍ତ୍ରଟି ଛାଡ଼ି ପଳାଇଲେ । ଇନ୍ଦ୍ର ଏହାକୁ ନିଜର ବ୍ୟବହାରରେ ଲଗାଇଲେ ।

ଏହିପରି ହସ୍ତୀମାନେ କର୍କଟର ଉପଦ୍ରବରୁ ରକ୍ଷା ପାଇଲେ ।

# ସିଂହଚର୍ମ ଜାତକ

ଏକ ଜନ୍ମରେ ବୋଧିସତ୍ତ୍ୱ ବାରାଣସୀର ଜଣେ କୃଷକର ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । ବୟସ ହେବାରୁ ସେ କୃଷିକର୍ମ ଦ୍ୱାରା ଜୀବିକା ନିର୍ବାହ କରିବାକୁ ଲାଗିଲେ ।

ଏହି ସମୟରେ ସେହି ନଗରରେ ଜଣେ ବଣିକ ବାସ କରୁଥିଲା । ସେ ଗୋଟିଏ ଗଧ ଉପରେ ନିଜର ବାଣିଜ୍ୟଦ୍ରବ୍ୟ ନେଇ ଭିନ୍ନ ଭିନ୍ନ ସ୍ଥାନକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିଲା । କୌଣସି ସ୍ଥାନରେ ପହଞ୍ଚିଲେ ସେ ତାର ବାଣିଜ୍ୟ ଦ୍ରବ୍ୟକୁ ଗଧ ପିଠିରୁ ଓହ୍ଲାଇ ବିକ୍ରୟ କରିବାକୁ ରହୁଥିଲା ଓ ଗଧ ଉପରେ ଗୋଟିଏ ସିଂହଚର୍ମ ପକାଇ ଦେଇ ତାକୁ ଶସ୍ୟକ୍ଷେତ୍ରରେ ଛାଡ଼ି ଦେଉଥିଲା । ଶସ୍ୟରକ୍ଷକମାନେ ତାହାକୁ ସିଂହ ମନେ କରି ତା ପାଖକୁ ଆସୁ ନଥିଲେ ଓ ସେ ଯଥେଚ୍ଛା ଶସ୍ୟ ଖାଇ ବଣିକ ନିକଟକୁ ଫେରି ଆସୁଥିଲା ।

ଥରେ ବଣିକ ଗଧ ପିଠିରେ ତାର ବାଣିଜ୍ୟଦ୍ରବ୍ୟ ଲଦି ଗୋଟିଏ ଗ୍ରାମରେ ପହଞ୍ଚିଲା । ସେ ଗଧପିଠିରୁ ଜିନିଷ ଓହ୍ଲାଇ ଦେଇ ତା ଉପରେ

ସିଂହଚର୍ମଟି ପକାଇ ତାକୁ ଚରିବା ପାଇଁ ଶସ୍ୟକ୍ଷେତରେ ଛାଡ଼ିଦେଲା ଓ ନିଜର ଖାଦ୍ୟ ପ୍ରସ୍ତୁତ କରିବାକୁ ଲାଗିଲା । ଶସ୍ୟରକ୍ଷକ ଏହାକୁ ଏକ ସିଂହ ମନେକରି ତା ପାଖକୁ ଯିବାକୁ ସାହସ କଲାନାହିଁ । ସେ ଗ୍ରାମକୁ ପଳାଇଯାଇ ଲୋକ-ମାନଙ୍କୁ କହିଲା—"ଆମ କ୍ଷେତରେ ଗୋଟାଏ ସିଂହ ପଶିଛି ।"

ଗ୍ରାମବାସୀମାନେ ଠେଙ୍ଗା, କଟୁରି, କୁନ୍ତ ଆଦି ଯାହା ପାଇଲେ ତାହା ଧରି ବାଦ୍ୟ ବଜାଇ କ୍ଷେତକୁ ଆସିଲେ । ଏମାନଙ୍କୁ ଦେଖି ଗଧ ଭୟରେ ବୋବାଇ ପକାଇଲା ।

ବୋଧିସତ୍ତ୍ୱ ଦେଖିଲେ ଯେ ଏଇଟା ସିଂହ ନୁହେଁ; ବାଘ ନୁହେଁ; ଏପରି କି ଗଧିଆ ମଧ୍ୟ ନୁହେଁ । ଏଇଟା ହେଉଛି ଗୋଟାଏ ଗଧ, ତା ଉପରେ ଗୋଟାଏ ସିଂହଚର୍ମ ପଡ଼ିଛି ।

ଲୋକେ ଗଧକୁ ପିଟି ମଲାପରି କରିଦେଲେ ।

ଗଧର ଦୁର୍ଦ୍ଦଶା ଦେଖି ବଣିକ କହିଲା—"ହାୟ, ଗଧର ବୁଦ୍ଧି ଥିଲେ ତାର ଏପରି ଅବସ୍ଥା ଘଟି ନ ଥାନ୍ତା । ସେ କ୍ଷେତର ଶସ୍ୟ ଖାଇ ନିଶ୍ଚିନ୍ତରେ ରହିଥାଆନ୍ତା । କିନ୍ତୁ ସେ ମୂର୍ଖ; ସେ ଯେଉଁ ବୋବାଇଲା, ସେଇ ତାର ସର୍ବନାଶର କାରଣ ।"

କିଛି ସମୟ ପରେ ଗଧଟି ମରିଗଲା । ବଣିକ ତାର ଦେହକୁ ଫିଙ୍ଗିଦେଇ ନିଜ ସ୍ଥାନକୁ ଚାଲିଗଲା ।

## କୁକ୍‌କୁଟ ଜାତକ

ବହୁକାଳପୂର୍ବେ ବ୍ରହ୍ମଦତ୍ତ ବାରାଣସୀରେ ରାଜତ୍ୱ କରୁଥିଲେ । ସେହି ସମୟରେ ବୋଧିସତ୍ତ୍ୱ କୁକ୍‌କୁଟ ଜନ୍ମ ଲାଭ କରି ବାରାଣସୀର ଗୋଟିଏ ବନରେ ବାସ କରୁଥିଲେ । ତାଙ୍କ ଅଧୀନରେ ଶତ ଶତ କୁକ୍‌କୁଟ ଥିଲେ । ସେମାନେ ବୋଧିସତ୍ତ୍ୱଙ୍କ ଆଦେଶ ପାଳନ କରିବାରେ ସର୍ବଦା ତତ୍ପର ଥିଲେ ।

ବୋଧିସତ୍ତ୍ୱଙ୍କ ବାସସ୍ଥାନଠାରୁ ଅଳ୍ପ ଦୂରରେ ଗୋଟିଏ ବିଡ଼ାଳୀ ବାସକରୁଥିଲା । ତାହା ଦେହରେ ଯଥେଷ୍ଟ ବଳ ଥିଲା ଓ କୌଶଳରେ ଅନେକ କୁକ୍‌କୁଟମାନଙ୍କୁ ବଧକରି ଖାଉଥିଲା । କିନ୍ତୁ ଯେତେ କୌଶଳ କଲେ ସୁଦ୍ଧା ସେ ବୋଧିସତ୍ତ୍ୱଙ୍କୁ ଧରି ପାରିଲା ନାହିଁ । ତହୁଁ ବିଚାରି କଲା—"ଏ କୁକୁଡ଼ାଟା ଭାରି ଚାଲାକ୍; କିନ୍ତୁ ମୁଁ ମଧ୍ୟ ଚାଲାକରେ ତାଠାରୁ ଊଣା ନୁହେଁ । ଯାଉଛି, ତାକୁ ମିଠା କଥାରେ ଭୁଲାଇ ମୋର ବଶ କରିବି । ମୋ ପାଖକୁ ଆସିଲେ ତାର ବେକ ମୋଡ଼ି ଖାଇବି ।" ଏହାପରି ବିଚାରି ସେ ବାହାରିଲା । ସେତେବେଳକୁ ବୋଧିସତ୍ତ୍ୱ ଗୋଟିଏ ଗଛର ଡାଳ ଉପରେ ବସିଥିଲେ ।

ବିଡ଼ାଳୀ ସେହି ଗଛମୂଳକୁ ଯାଇ କହିଲା—"ହେ କୁକ୍‌କୁଟ, ତୁମେ କି ସୁନ୍ଦର ! ତୁମର ଡେଣା ଦୁଇଟା କେଡ଼େ ଚକ୍ ଚକ୍ ଦିଶୁଛି । ତୁମର ରଙ୍ଗ ଚୂଳଟି ମୁକୁଟ ପରି ଶୋଭା ପାଉଛି । ତୁମକୁ ଦେଖି ମୋର ମନ ତୁମରିଠାରେ ଲାଗି ରହିଛି । ତୁମେ ମୋତେ ତୁମ ସ୍ତ୍ରୀ କଲେ ମୋର ଜୀବନ ସାର୍ଥକ ହେବ । ଗଛଡାଳରେ ବସିଛ କାହିଁକି ? ଆସ ମୋତେ ଆଲିଙ୍ଗନ କର । ମୁଁ ତୁମର ପାଦସେବା କରି ଧନ୍ୟ ହେବି ।"

ବିଡ଼ାଳୀର କଥା ଶୁଣି ବୋଧିସତ୍ତ୍ୱ ଚିନ୍ତାକଲେ—'ଏ ଦୁଷ୍ଟା ବିଡ଼ାଳୀ ମୋର କେତେ ଅନୁଚରଙ୍କୁ ଖାଇ ସାରିଛି । ଏବେ ସେ ମୋତେ ଖାଇବା ପାଇଁ ଏଭଳି ମଧୁର କଥା କହୁଛି । ମୁଁ ତା ଫାନ୍ଦରେ ପଡ଼ିବି ନାହିଁ ।'

ସେ କହିଲେ—"ହେ ସୁନ୍ଦରି, ତୁମ କଥାଗୁଡ଼ିକ ବଡ଼ ମଧୁର । କିନ୍ତୁ ଆମ ଭିତରେ ବହୁତ ପ୍ରଭେଦ । ତୁମର ଚାରିଟି ଗୋଡ଼ ଅଛି, ମୋର ଦୁଇଟି ଗୋଡ଼ । ତୁମର ଜାତି ଓ ମୋର ଜାତି ଭିନ୍ନ । ତୁମେ ପଶୁ, ମୁଁ ପକ୍ଷୀ । ଆମ ଭିତରେ ବିବାହ ହୋଇ ପାରିବା ଅସମ୍ଭବ । ଯାଅ, ତୁମ ନିଜ ଜାତିରୁ ଗୋଟିଏ ବାଛି ତା ସହିତ ବିବାହ ହୁଅ ।"

ବିଡ଼ାଳୀ ଦେଖିଲା, ଏ କୁକ୍‌କୁଟ ତାହାଠାରୁ ବୁଦ୍ଧିମାନ୍ । ତଥାପି ନିରାଶ ନ ହୋଇ ସେ କହିଲା—"ତୁମ କଥା ସତ । ମୁଁ ପଶୁ, ତୁମେ ପକ୍ଷୀ ।

ତାହାହେଲେ ମଧ୍ୟ ଆମର ବିବାହ ହୋଇ ନ ପାରିବ କାହିଁକି ? ମୋତେ ବିବାହ କଲେ ତୁମର ଯୌବନ, ତୁମର ଏ ରୂପ ଏହିପରି ରହିଥିବ । ମୁଁ ତୁମକୁ ପ୍ରାଣ ଦେଇସାରିଛି । ଏଣିକି ତୁମେ ମୋତେ ପତ୍ନୀ କରି ରଖ, ନୋହିଲେ ଦାସୀ କରି ରଖ । ଯାହା ତୁମର ଇଚ୍ଛା ।”

ବୋଧିସତ୍ତ୍ୱ ଭାବିଲେ—“ଏହା ସହିତ କଠୋର ବ୍ୟବହାର ନ କଲେ ଏ ଦୁଷ୍ଟା ଯିବ ନାହିଁ ।” ସେ କହିଲେ—“ତୁ ମୋର ବନ୍ଧୁବାନ୍ଧବଙ୍କୁ ମାରି ଖାଇଛୁ । ତୁ କିପରି ମୋର ସ୍ତ୍ରୀ ହେବାକୁ ସାହସ କରି କହୁଛୁ ଯାଅ, ତୋ ଭଳି ଦୁଷ୍ଟା ଜୀବକୁ ମୁଁ କେବେହେଲେ ବିଶ୍ୱାସ କରି ପାରିବି ନାହିଁ ।

ଯକ୍ଷିଣୀର ସମସ୍ତ ଚେଷ୍ଟା ବିଫଳ ହେବାରୁ ସେ ବୋଧିସତ୍ତ୍ୱଙ୍କୁ ଖାଇବାର ଆଶା ଛାଡ଼ିଦେଇ ନିଜ ସ୍ଥାନକୁ ଚାଲିଗଲା ।

## ଚକ୍କାରୀୟ ଜାତକ

ବାରାଣସୀର ରାଜା ବ୍ରହ୍ମଦତ୍ତଙ୍କର ଜଣେ ରାଜପୁରୋହିତ ଥିଲେ । ସେ ମହାଜ୍ଞାନୀ ବୋଲି ପରିଚିତ ଥିଲେ ଓ କେତେ ଜଣ ଶିଷ୍ୟ ତାଙ୍କ ପାଖରେ ବିଦ୍ୟା ଅଧ୍ୟୟନ କରୁଥିଲେ । ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶିଷ୍ୟ ଥିଲେ ଚକ୍କାରୀୟ । ବୋଧିସତ୍ତ୍ୱ ଏହି ଚକ୍କାରୀୟ ରୂପରେ ଜନ୍ମଗ୍ରହଣ କରିଥିଲେ ।

ପୁରୋହିତ ବୟସରେ ପ୍ରୌଢ଼ ଥିଲେ । ତାଙ୍କର ଦେହର ବର୍ଣ୍ଣ ପାଣ୍ଡୁର ଥିଲା ଓ ମୁଖରେ ଗୋଟିଏ ହେଲେ ଦନ୍ତ ନ ଥିଲା ।

ବାରାଣସୀରେ ଠିକ୍ ତାଙ୍କର ବୟସର ଓ ବର୍ଣ୍ଣର ଅନ୍ୟ ଜଣେ ବ୍ରାହ୍ମଣ ଥିଲେ । ତାଙ୍କର ମଧ୍ୟ ଗୋଟିଏ ହେଲେ ଦନ୍ତ ନ ଥିଲା । ପୁରୋହିତ ଏହି ବ୍ରାହ୍ମଣଙ୍କୁ ତାଙ୍କର ପ୍ରଧାନ ଶତ୍ରୁ ବୋଲି ମନେ କରୁଥିଲେ । ଏହି ଶତ୍ରୁତାର ଏକ ଗୂଢ଼ କାରଣ ଥିଲା ।

ପୁରୋହିତଙ୍କର ସ୍ତ୍ରୀ ନଷ୍ଟଚରିତ୍ରା ଥିଲା । ସେ ଏହି ବ୍ରାହ୍ମଣ ସହିତ ପାପସମ୍ପର୍କରେ ଲିପ୍ତ ଥିଲା । ପୁରୋହିତ ତାହା ଜାଣିପାରି ସ୍ତ୍ରୀକୁ ଅନେକ ସାବଧାନ କଲେ ମଧ୍ୟ ସେ ସେହି ପାପକର୍ମରୁ ବିରତ ହୋଇ ନ ଥିଲା । ଶେଷରେ ସେହି ବ୍ରାହ୍ମଣଙ୍କୁ ବିନାଶ କରିବା ପାଇଁ ପୁରୋହିତେ ଏକ ଚକ୍ରାନ୍ତ ଅଣ୍ଟିଲେ ।

ଦିନେ ସେ ରଜାଙ୍କୁ କହିଲେ, "ମହାରାଜ, ଆପଣ ହେଉଛନ୍ତି ପୃଥିବୀର ଶ୍ରେଷ୍ଠ ରଜା । ଆପଣଙ୍କ ନଗର ଭଳି ସୁନ୍ଦର ନଗର ପୃଥିବୀରେ ନାହିଁ । କିନ୍ତୁ ଏହି ନଗରରେ ଗୋଟିଏ ଦୋଷ ରହିଯାଇଅଛି । ଏହାର ଦକ୍ଷିଣ ଦ୍ୱାରଟି ଅଶୁଭ । ଏଥିରେ ଗୋଟିଏ ପ୍ରେତ ବାସ କରୁଅଛି । ଏହି ଦ୍ୱାର ରହିଲେ ଆପଣଙ୍କର ଅନିଷ୍ଟ ଘଟିବ ।" ରଜା ପଚାରିଲେ, "ତେବେ କଅଣ କରିବାକୁ ହେବ ?" ପୁରୋହିତ ଉତ୍ତର କଲେ, "ଏହି ଦ୍ୱାରକୁ ଛାଡ଼ି ଅନ୍ୟ ଏକ ଦ୍ୱାର ବସାଇବାକୁ ହେବ । ଆଗ ଶୁଭ ଲକ୍ଷଣ ଥିବା କାଠରେ ଗୋଟିଏ ଦ୍ୱାର ତିଆରି କରି ରଖାଯିବ । ତାହା ପରେ ଏ ଦ୍ୱାରକୁ କାଢ଼ି ସେଠାରେ ଯଜ୍ଞ କରାଯିବ ଓ ବଳି ଦେବା ପରେ ନୂତନ ଦ୍ୱାର ବସାଯିବ ।"

ରଜା ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇ ଉପଯୁକ୍ତ ବ୍ୟବସ୍ଥା କରିବା ନିମନ୍ତେ ପୁରୋହିତଙ୍କ ହସ୍ତରେ ଆବଶ୍ୟକ ଅର୍ଥ ଦେଲେ । ପୁରୋହିତ ନୂତନ ଦ୍ୱାର ନିର୍ମାଣ କରାଇ ପୁରାତନ ଦ୍ୱାରକୁ ବାହାର କରାଇଦେଲେ । ଯଜ୍ଞକାର୍ଯ୍ୟ ଶେଷ ହେଲା । ତତ୍ପରେ ସେ ରଜାଙ୍କୁ କହିଲେ, "ମହାରାଜ, ଶୁଭ ଲଗ୍ନ ଦେଖି ବଳିଦାନ ପରେ ନୂତନ ଦ୍ୱାର ପ୍ରତିଷ୍ଠା କରିବାକୁ ହେବ । କାଲି ଖୁବ୍ ଶୁଭ ଦିନ ଅଛି ।" ରଜା କହିଲେ, "କଅଣ ବଳି ଦେବାକୁ ହେବ ?" ପୁରୋହିତ କହିଲେ, "ପ୍ରେତକୁ ଦୂର କରିବା ପାଇଁ ଗୋଟିଏ ବ୍ରାହ୍ମଣ ବଳି-ଦେବା ଆବଶ୍ୟକ । ପୁଣି ସେହି ବ୍ରାହ୍ମଣ ଦନ୍ତହୀନ ଓ ପାଣ୍ଡୁର ବର୍ଣ୍ଣର ନ ହେଲେ ବଳିର ଯୋଗ୍ୟ ହେବ ନାହିଁ । ବଳିଦେବା ପରେ ତାର ମାଂସ ଓ ଅସ୍ଥିକୁ ପୋତି ତାହାର ଉପରେ ନୂତନ ଦ୍ୱାର ସ୍ଥାପନ କରାଯିବ । ତାହା ହେଲେ ଆପଣଙ୍କର ସୌଭାଗ୍ୟ ବୃଦ୍ଧି ପାଇବ ।" ରଜା ଏହା ଶୁଣି ସନ୍ତୁଷ୍ଟ

ତାଙ୍କୁ କହିଲେ, "ବେଶ୍, ବଳିପାଇଁ ଏହିସବୁ ଲକ୍ଷଣ ଥିବା ଜଣେ ବ୍ରାହ୍ମଣ ସ୍ଥିର କରି କାଲି ଆଣ । କାଲି ଶୁଭବେଳ ମଧ୍ୟରେ ଯେପରି ସମସ୍ତ କାର୍ଯ୍ୟ ଶେଷ ହୁଏ ।"

ପୁରୋହିତେ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହେଲେ । କାଲି ସନ୍ଧ୍ୟା-ବେଳକୁ ତାଙ୍କର ଶତ୍ରୁ ଜୀବନରେ ନ ଥିବ ।

ପୁରୋହିତ ଅତି ଉତ୍ସାହରେ ଘରକୁ ଆସିଲେ । ଆନନ୍ଦର ଆତିଶଯ୍ୟରେ ସେ ଚୁପ୍ ହୋଇ ରହି ପାରିଲେ ନାହିଁ । ସେନିଜର ସ୍ତ୍ରୀକୁ କହିଲେ, "ମୁଁ ତୋତେ ଏତେ କରି କହିଲି; କିନ୍ତୁ ସେ ବ୍ରାହ୍ମଣର ସାଙ୍ଗ ଛାଡ଼ି ପାରିଲୁ ନାହିଁ । କାଲି ସନ୍ଧ୍ୟା ପୂର୍ବରୁ ତାକୁ ମାରି ବଳି ଦିଆଯାଇଥିବ । ଏଣିକି ତୁ କାହା ସଙ୍ଗେ ପାପସମ୍ପର୍କ କରିବୁ ?" ବ୍ରାହ୍ମଣୀ ପଚାରିଲା, "ଗୋଟାଏ ନିର୍ଦୋଷ ଲୋକକୁ ମାରିବ କାହିଁକି ?" ପୁରୋହିତ କହିଲେ, "ଆଲୋ, ରାଜା ମୋତେ କହିଛନ୍ତି ଗୋଟାଏ ପାଣ୍ଡୁର ବର୍ଣ୍ଣର ବ୍ରାହ୍ମଣକୁ ବଳି ଦିଆଯିବ; ତାର ଦାନ୍ତ ନ ଥିବ । ତୋର ସେହି ଉପପତିକୁ ନେଇ ମୁଁ ବଳିଦେବି ବୋଲି ସ୍ଥିର କରି ସାରିଛି ।"

ଏହା ଶୁଣିଲାମାତ୍ରେ ବ୍ରାହ୍ମଣୀ ତାର ସେହି ଉପପତି ପାଖକୁ ସଙ୍ଗେ ସଙ୍ଗେ ଖବର ପଠାଇଦେଲା, "ରାଜା ହୁକୁମ ଦେଇଛନ୍ତି, ଦାନ୍ତ ନ ଥିବା ଜଣେ ପାଣ୍ଡୁର ବର୍ଣ୍ଣର ବ୍ରାହ୍ମଣକୁ କାଲି ବଳିଦେବେ । ଏହି ମୁହୂର୍ତ୍ତରେ ତୁମେ ସହର ଛାଡ଼ି ଦୂରକୁ ପଳାଇ ଯାଅ । କାଲି ସହରରେ ଦେଖାପଡ଼ିଲେ ତୁମ ଜୀବନର ଆଶା ରହିବ ନାହିଁ ।" ବ୍ରାହ୍ମଣ ଏ ସମ୍ବାଦ ପାଇଲା ମାତ୍ରେ ତାର କେତେଜଣ ବିଶ୍ୱାସୀ ଲୋକଙ୍କ ସାହାଯ୍ୟରେ ରାତିକ ମଧ୍ୟରେ ନଗରଠାରୁ ବହୁ ଦୂରକୁ ପଳାଇଲା । ରାଜା ଏପରି ଜଣେ ବ୍ରାହ୍ମଣକୁ ବଳିଦେବେ ବୋଲି ଶୁଣି ନଗରରେ ଯେତେ ଦାନ୍ତ ନ ଥିବା ପାଣ୍ଡୁର ବର୍ଣ୍ଣର ବ୍ରାହ୍ମଣ ଥିଲେ ସେମାନେ ସମସ୍ତେ ଦୂରକୁ ପଳାଇଗଲେ ।

ବ୍ରାହ୍ମଣ ପଳାଇଥିବା କଥା ପୁରୋହିତଙ୍କୁ ଜଣା ନ ଥିଲା । ପୁରୋହିତେ ସକାଳୁ ଯାଇ ରାଜାଙ୍କୁ କହିଲେ, "ମହାରାଜ, ସନ୍ଧ୍ୟା ପୂର୍ବରୁ ବଳି ଦେବାକୁ

ହେବ । ଅମୁକ ଜାଗାରେ ଯେଉଁ ଅମୁକ ବ୍ରାହ୍ମଣ ଅଛି, ତାହାଠାରେ ସବୁ ଲକ୍ଷଣ ଅଛି । ବଳି ପାଇଁ ତାହାକୁ ଆଣାନ୍ତୁ ।'' ପୁରୋହିତେ ତାଙ୍କ ସେହି ବ୍ରାହ୍ମଣର ନାମ ଓ ବାସସ୍ଥାନ କହିଦେଲେ । ତାଙ୍କୁ ଧରି ଆଣିବା ପାଇଁ ରାଜା କେତେଜଣ ଚରଙ୍କୁ ସେଠାକୁ ପଠାଇଲେ; କିନ୍ତୁ ତାଙ୍କୁ ପାଇଲେ ନାହିଁ । ନଗରଯାକ ଖୋଜି ଖୋଜି ନିରାଶ ହୋଇ ଫେରିଆସି ସେମାନେ ରାଜାଙ୍କୁ ଜଣାଇଲେ ।

ପୁରୋହିତେ ମୁଣ୍ଡରେ ହାତ ଦେଇ ବସିଲେ । ତାଙ୍କର ସବୁ କଳ୍ପନା ପଣ୍ଡ ହୋଇଗଲା ।

ରାଜା କହିଲେ, ''ଶୁଭ ଲଗ୍ନ ଗଲାଗଲେ ଆଉ ବର୍ଷକ ମଧ୍ୟରେ ଶୁଭ ଯୋଗ ନାହିଁ ବୋଲି ପୁରୋହିତେ କହୁଥିଲେ । ତୁମେମାନେ ପୁଣି ଯାଅ, ଯେଉଁଠାରେ ଦାନ୍ତ ନ ଥିବା ପାଣ୍ଡୁର ବର୍ଣ୍ଣର କୌଣସି ବ୍ରାହ୍ମଣଙ୍କୁ ଦେଖିବ, ତାକୁ ଧରି ଆଣିବ । ବର୍ଷକଯାଏ ଦ୍ୱାର ମେଲା ହୋଇ ରହିବା ଅସମ୍ଭବ । ଯେ କୌଣସିମତେ ଆଜି ସନ୍ଧ୍ୟା ସୁଦ୍ଧା ଏ ଶୁଭ କାର୍ଯ୍ୟ କରିବାକୁ ହେବ ।''

ଚରମାନେ ପୁଣି ସହରଯାକ ଖୋଜିଲେ; କିନ୍ତୁ ସେପରି ଲୋକ ନ ପାଇ ଫେରିଆସି କହିଲେ, ''ଆମେ ସହରର ଅନ୍ଧସନ୍ଧି ସବୁଠାରେ ଖୋଜିଲୁ; କିନ୍ତୁ ଏଇ ପୁରୋହିତଙ୍କ ଛଡ଼ା ସେପରି ବ୍ରାହ୍ମଣ କେଉଁଠାରେ ପାଇଲୁ ନାହିଁ ।''

ପୁରୋହିତେ ଚମକି ପଡ଼ିଲେ ।

ରାଜା କହିଲେ, ''କିନ୍ତୁ ପୁରୋହିତଙ୍କୁ କିପରି ବଳି ଦିଆଯିବ ? ତାଙ୍କ ପରି ପଣ୍ଡିତ ଲୋକ ନାହାନ୍ତି । ତାଙ୍କୁ ବଳି ଦେବାକୁ ହେଲେ ସେହିପରି ଜଣେ ପଣ୍ଡିତ ପୁରୋହିତ କାହୁଁ ମିଳିବ ?''

କେତେ ଜଣ କହିଉଠିଲେ, ''ମହାରାଜ ! ପୁରୋହିତଙ୍କର ତକ୍‌କାରିୟ ବୋଲି ଯେଉଁ ଶିଷ୍ୟ ଜଣକ ଅଛନ୍ତି, ସେ କମ୍ ପଣ୍ଡିତ ନୁହନ୍ତି । ତାଙ୍କୁ

ରାଜ-ପୁରୋହିତ କରନ୍ତୁ । ସେ ବିଧିବିଧାନ ଅନୁସାରେ ବଳିଦାନ କାର୍ଯ୍ୟ କରିପାରିବେ ।"

ଶୁଭ ମୁହୂର୍ତ୍ତ ନିକଟ ହୋଇଆସୁଛି । ରାଜା ଏହି ପ୍ରସ୍ତାବରେ ସ୍ୱୀକୃତ ହୋଇ ତକ୍‌କାରିୟଙ୍କୁ ପୁରୋହିତ ପଦରେ ନିଯୁକ୍ତ କଲେ ଓ ପୂର୍ବ ପୁରୋହିତଙ୍କୁ ବଳି ଦେବା ସ୍ଥିର କରାଗଲା ।

ସହସ୍ର ସହସ୍ର ଲୋକ ଦ୍ୱାର ନିକଟରେ ରୁଣ୍ଡ ହେଲେ । ପୁରୋହିତ ରାଜାଙ୍କ ଆଦେଶରେ ବନ୍ଧା ହୋଇ ଅଣାଗଲେ । ତକ୍‌କାରିୟ ଗୋଟିଏ ଗର୍ତ୍ତ ଖୋଳି ତାହା ଉପରେ ଗୋଟିଏ ତମ୍ବୁ ଟାଣିଦେଲେ ଓ ତହିଁରେ ଗୁରୁଙ୍କୁ ନେଇ ତାହା ଭିତରେ ପ୍ରବେଶ କଲେ । ତାଙ୍କ ହାତରେ ଖଣ୍ଡା ।

ପୁରୋହିତେ ଦେଖିଲେ ତାଙ୍କର ମୃତ୍ୟୁ ନିଶ୍ଚିତ । ସେ ଶିଷ୍ୟଙ୍କୁ କହିଲେ, "ମୁଁ ଯେଉଁ ଗାତ ଖୋଳିଥିଲି ଏବେ ସେଇଥିରେ ପଡ଼ିଲି । ସେ ବ୍ରାହ୍ମଣଙ୍କୁ ମାରିବା ପାଇଁ ମୁଁ ଯେଉଁ ଷଡ଼ଯନ୍ତ୍ର କରିଥିଲି, ତାହା ନିଶ୍ଚୟ ସଫଳ ହୋଇଥାନ୍ତା । କିନ୍ତୁ ମୁଁ ମୂର୍ଖ ସେ ଦୁଷ୍ଟା ସ୍ତ୍ରୀକୁ ମୋର ମନର କଥା କହିବାରୁ ସବୁ ପଣ୍ଡ ହୋଇଗଲା । ତା' ପରିବର୍ତ୍ତେ ମୋତେ ମରିବାକୁ ହେଲା ।" ତକ୍‌କାରିୟ କହିଲେ, "ଜିହ୍ୱାକୁ ସଂଯତ କରି ନ ପାରିଲେ ବିଡମ୍ବନା ଫଳ ଫଳିଥାଏ । ଆପଣ ଅପାଚରେ ଅସମୟରେ କଥା କହିଥିବାରୁ ଏବେ ପ୍ରାଣ ଦେବାକୁ ଯାଉଛନ୍ତି ।"

ଏହା ପରେ ସେ ଅସମୟରେ କଥା କହିବାର ଅପରିଣାମଦର୍ଶିତା ବୁଝାଇ ତିନି ଗୋଟି ଉଦାହରଣ ଦେଲେ । ପରିଶେଷରେ ସେ କହିଲେ, "ଆପଣ ମୋର ଗୁରୁ, ଆପଣଙ୍କୁ ଉପଦେଶ ଦେବା ମୋର ଧୃଷ୍ଟତା ହୋଇପାରେ; କିନ୍ତୁ ଆପଣ ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କର ଜୀବନ ରକ୍ଷା କରିବି ।"

ପୁରୋହିତେ ନୈରାଶ୍ୟର ଘୋର ଅନ୍ଧକାର ମଧ୍ୟରେ ଆଶାର କ୍ଷୀଣ ଆଲୋକ ଦେଖିପାରି ପଚାରିଲେ, "ବତ୍ସ, କପରି ତୁମେ ମୋର ଜୀବନ ରକ୍ଷା କରିପାରିବ ?"

ତକକାଷାୟୁ କହିଲେ, "ମୁଁ ରାଜାଙ୍କୁ କହିଆସିଛି ଯେ ବଳିଦାନ କାର୍ଯ୍ୟ ଅର୍ଦ୍ଧରାତ୍ର ସମୟରେ ହେବ । ରାତ୍ରିର ଅନ୍ଧକାର ମଧ୍ୟରେ ଆପଣ ନଗର ଛାଡ଼ି ପଳାଇବେ ।"

ତକ୍‌କାଷାୟୁ କୌଶଳରେ ଗୋଟିଏ ମୃତ ଛାଗ ଗର୍ତ୍ତମଧ୍ୟକୁ ଅଣାଇ ତାହାର ରକ୍ତ ମାଂସ ଆଣି ଦ୍ୱାର ପ୍ରତିଷ୍ଠା କରାଇଲେ । ସେତେବେଳକୁ ପୁରୋହିତ ନଗରଠାରୁ ବହୁ ଦୂରକୁ ଚାଲିଯାଇଥିଲେ । □□□